# ସାମ୍ବାଦିକର ଡାଏରୀ

ଶ୍ରୀ ମଧୁ ମହାନ୍ତି





ପରିବେଷକ :

ଓଡ଼ିଶା ବୁକ୍ ଷ୍ଟୋର

# ସାମ୍ବାଦିକର ଡାଏରୀ

ମଧୁମହାନ୍ତି

ପ୍ରକାଶିକା :

**ଶ୍ରୀମତୀ ଶକୁନ୍ତଳା ମହାନ୍ତି**

ଏଡ୍‌ମାର୍କେଟ୍, କଟକ

ପରିବେଷକ :

**ଶ୍ରୀ ଗୋବିନ୍ଦ ଚରଣ ପାତ୍ର**

**ଓଡ଼ିଶା ବୁକ୍ ଷ୍ଟୋର୍**

ବିନୋଦବିହାରୀ : କଟକ-୨

ପ୍ରଥମ ପ୍ରକାଶ—୧୯୭୮

(ବସନ୍ତ ପଞ୍ଚମୀ)

ମୁଦ୍ରଣ :

**ରାଧାରାଣୀ ପ୍ରିଣ୍ଟର୍ସ**

ଡଗରପଡ଼ା

କଟକ-୧

ମୂଲ୍ୟ : ଦୁଇଟଙ୍କା ପଚାଶ ପଇସା ମାତ୍ର

# " ଉତ୍ସର୍ଗ "

ଉତ୍ତର ପୁରୁଷଙ୍କୁ—ଯାହାଙ୍କ ହାତରେ ଏ ଦେଶର ଭାଗ୍ୟ-ଉନ୍ନୟନ !

ତା ୧୨-୨-୭୮ ମଧୁ ମହାନ୍ତି

ବସନ୍ତ ପଞ୍ଚମୀ

ସତୀଚଉରା

---

## ବେଦୀ ମଙ୍ଗୁଳା

ଯେଉଁ କଳସରେ ବେଦୀ ମଙ୍ଗୁଳା ହୁଏ...ସେଇ ମାଟିଆରେ ଘୁଷି ମଦ ବି ପଚେଶ ।

'ମଦ ବଡ଼ା—କାମ ସରିଲେ ଗଡ଼ ଗଡ଼ା ।'!

କିନ୍ତୁ ଏହି ରଙ୍ଗ ଗଡ଼ା ମାଟିଆକୁ ନେଇ ଯିଏ ମଶାଣିରେ ଶବସ୍ନାନ କରନ୍ତି ସେଇ ଅପ୍ରୟୋଜନକୁ ପ୍ରୟୋଜନରେ ଲଗାନ୍ତି ।

ଶବକୁ ସେଇ ମାଟିଆ ସେତେବେଳେ ଶବାଗ୍ନିର ... "**ଦଇ-ଶିତଳା**" ପରେ ପିଠି ଭାଙ୍ଗି ଦିଆଯାଏ...ସେ ଶବକୁ କାନ୍ଧେଇ ନେଉଁଥିବେ... ଏକ ଉଦରରେ ଯିଏ ଦେଉଁ ପଡ଼ନ୍ତି ତାଙ୍କୁ "**ଖପରଭଙ୍ଗୁଆ**" କୁହାଯାଏ ।

ଆଉ ସେଇ ଶବକୁ ଯିଏ ଗୋଟେଇ ମାଗି ଆଣିଥିବା ଆହାରର ଅଧାର ରୂପେ ବ୍ୟବହାର କରନ୍ତି ତାଙ୍କୁ "**ଖପରଖିଆ**" ବୋଲି ସମାଜରେ ବାନ୍ଧନ କରିଥାନ୍ତି ।

'ଖପର ଖିଆ' ଓ 'ଖପରଭଙ୍ଗୁଆ'ଙ୍କ ଭଳି **ହାଣ୍ଟୁଆ**,...**ଦାନୁଆ**... **ହଳିଆ**...**ସାନ୍ଟୁଆ**...ଏହିପରି ବୃତ୍ତି ଭେଦରେ ବ୍ରାହ୍ମଣ ସମାଜରେ ମଧ୍ୟ ଉଚ୍ଚନୀଚ ମାନ ଭେଦ ରହିଛି ।

ହନ୍ଟୁଆ ସାନ୍ଟୁଆ କିନ୍ତୁ ମୂଳ ଖୋଳି ସାନ୍ଟୁ କି ଅଦା କଲେ ତାହା ଦେବ ଭୋଗ୍ୟ ହୁଏ ।

ସେହିପରି ମଶାଣିରେ ଯେଉଁ ବ୍ରାହ୍ମଣ ପ୍ରତ୍ୟେକ୍ ମାଟିଆରେ ଯିଏ ନିବଧାନ କରୁଥିଲେ ତାଙ୍କୁ ଦାନୁଆ, ଘାଣ୍ଟୁଆ ବ୍ରାହ୍ମଣ ବୋଲି...ଏକ ତାଚ୍ଛିଲ୍ୟ ଉପାଧି ମିଳିଲା ।

ଜନ୍ମ, ମୃତ୍ୟୁ ଓ ଜନ୍ମର ଏହିକ ଭେଦକୁ ଯିଏ ଉପରୁ ବୁଝନ୍ତି... ଅଉ ଯିଏ ବା ମୂଳ ଖୋଳି ସାମଗ୍ରୀର ଗୁଣ ଅନୁସାରେ ସମାଜର ପ୍ରୟୋଜନ ଲାଗି ଅୟୋଜନ କରନ୍ତି—ସେମାନେ ସ୍ୱଧର୍ମରେ ରହିଅନ୍ତେ ନ ପାରିଲେ ବି ମନ୍ଦେଲ୍ ବେଶୀ ମୁଣ୍ଡରେ ପାଣି ପାଆନ୍ତି । ଅର୍ଥାତ୍ ମାଟିଆ ଖପରଭଙ୍ଗା

ମାଟିରେ ମିଶିଗଲେ ସେଥିରେ ଖାଲି···ପ୍ରଜନନ ଶକ୍ତି ବଢ଼େନାହିଁ···ଯୁଗକୁ ଯୁଗ ବିବର୍ତ୍ତନ ଧାରାରେ ଇତିହାସ ଓ ସଂସ୍କୃତିର ସଙ୍କେତ ମଧ୍ୟ ମିଳେ ।

ବେଣୀ ମଙ୍ଗୁଳାଠାରୁ ଚିତାଗ୍ନି ଯାଏ···ସମାଜରେ ବ୍ୟକ୍ତିର ଯେଉଁ ସଂଯୋଗ ବିଯୋଗ ତାହାହିଁ ପ୍ରଗତିର ପାଥେୟ ।

"ଯେସନେ ନଦୀ ସ୍ରୋତ ଜଳେ
ବାଲୁକା ନ ରହେ ନିସ୍ତଳେ
ସଂଯୋଗ ବିଯୋଗ ଘଟଇ
ବାଲୁକା ଭାସି ଯାଉ ଥାଇ" ( ଭାଗବତ )

ମୋର ବନ୍ଧା ବସ୍ତାନରୁ ଯିଏ ଏତକ ବାଛି ଛଡ଼ାଇ ପଢ଼ାଇଲେ ତାଙ୍କର ସେ ଋଣକୁ ମୁଁ ଜୀଅନ୍ତେ ସୁଝି ନପାରିଲେ ବି···ଉତ୍ତର ପୁରୁଷ ନିଜଗୁଣରେ ଚିହ୍ନିବେ ।

ଯାହା କେବଳ ଗୁପ୍ତ···ଯାହା କହିଲେ ପାଟିରୁ ପିଠା ଖସିଯାଏ ସେ ସତ୍ୟର ସାର କଣ୍ଠିତ ଅନ୍ୱେଷଣ ବାର୍ତ୍ତା-ଜୀବର ସ୍ୱଧର୍ମ । ଏକଥିରେ ତାର ସମାଜ କର୍ତ୍ତବ୍ୟ । ତେଣୁ ପାଠକ ପାଠିକାଙ୍କୁ ଏଇ କେଇ ପୃଷ୍ଠାର ଡାଲିର ବିତରଣ ।

ନମୁନା ସୁରତରେ ଏ କେଇ ପୃଷ୍ଠାକୁ ପେସ୍ କଲି । ସ୍ୱାଦ ଓ ସ୍ୱାସ୍ଥ୍ୟ ଏକା ନୁହେଁ । ଚିତା ଓ ଚିନ୍ତା···ଏକା ନୁହେଁ । ଚିନ୍ତା ସଜୀବର ଜ୍ୱଳନ ଚିତା ନିର୍ଜୀବର ଦହନ ।

ଅତଏବ ଏତକ କାମନା···ଯଦି ଏ କେଇଟି ପୃଷ୍ଠା ପାଠକ ପାଠିକାଙ୍କ ଚିନ୍ତାକୁ ଟହଲାଇ ଦିଏ ତେବେ···ଯେଉଁ କେଇଜଣ ତରୁଣ ଓ ପ୍ରବୀଣ;···ଏତକ ବାଛି ନପାଇଲେ, ସେଇମାନେ ସମାଜ ଚାହିଁଲେ ଆହୁରି ଏହାପରେ ଲେଖା ଯୋଗାଇ ଦେବାକୁ କୁଣ୍ଠିତ ହେବେ ନାହିଁ । ମୁଁ ତ ନିଃସ୍ୱ-ନିଃସଙ୍ଗ । ତେଣୁ ଭରସା ଭବର ସଂସାର ଉପରେ ।

"ଭାବ ନ ହୋଇ ଅଭାବ ନପାଇ ।" କୋଣାର୍କ କାବ୍ୟ କାରଙ୍କ ଭାଷାରେ;—

"ପରାଣ ଦେବାକୁ ବଳିଲା ମୋ ମନ
ପୀରତି ନପାଏ ବନ୍ଧୁ ବଳାଏ ।"

ବାଗ୍‌ଦେବୀ-ବ୍ରତ
୧୧-୨-୧୯୭୮

ମଙ୍ଗଳାର୍ଥୀ
ମଧୁ ମହାନ୍ତି

# ବର୍ଷା-ରମ୍ଭ

ସୁମନ୍ତ ମୂର୍ଚ୍ଛାଙ୍କ ଓ ସୁମିତ୍ରା ନନ୍ଦନ ବଳୋକା ଓ ଦ୍ୱନ୍ଦ୍ୱୀ ସାହିତ୍ୟର ମୂଳରଥୀ···ଚଳି ପଡ଼ିଲେ ।

ଏ ଦୁହେଁ ନିଜ ସ୍ୱରର ଓ ଆନ୍ତରକୁ, ଉଚ୍ଚାରିତ କରୁଥିଲେ ଅ-କ୍ଷରରେ···ବିଶ୍ୱ-ହିତ କାମନାରେ···ନିତ୍ୟାଦର୍ଶର ପ୍ରେରଣାରେ ।

ଶିବ ଓ ଶୁଭର ତପସ୍ୱୀ ଦୁହେଁ···ଥିଲେ ସୁନ୍ଦରର ପୂଜାରୀ··· ସୁଷମାର ସାଧନା ।

ତେଣୁ ପରମ ରମଣୀୟ ଥିଲା···ଏ ଦୁହିଙ୍କ ପ୍ରସାଦ । ଯଥାର୍ଥରେ··· ଯାଙ୍କ ପ୍ରସାଦ ହୋଇଥିଲା ପରମାର୍ଥ ।

ଉପାଧି ଥିଲା ଯାଙ୍କ ସାଧନାର ଉପାୟ ମାତ୍ର ।

ଉଦ୍ଦେଶ୍ୟ ଥିଲା ମହତ୍ ମାନବିକତା ।

ସୁତରାଂ ଉପାଧିର ବନ୍ଦନାରେ···ଯାଙ୍କ ପୌରୁଷର ଶୋଚନା ନଥିଲା ।

ଆନନ୍ଦର ଆବେଗରେ·····ଯାଙ୍କ ନମ୍ରତା·····କରୁଥିଲା··ଯାଙ୍କ ଯୋଗ୍ୟତାକୁ···ଶୁଭ୍ର ଓ ଶୋଭନ ।

ସହୃଦୟତାରେ ଏ ଦୁହେଁ ଯେତିକି ପରକୁ ଆପଣାର କରୁଥିଲେ···ସେତିକି ଅକ୍ଷରର ବେପାର ଛାଡ଼ି···ପାବୁଛ ଧରୁଥିଲେ ଜୀବନକୁ । ଶକ୍ତିକୁ ଛାଡ଼ି ଯୁଙ୍କର ଯେଉଁ ମାତନଷ୍ଟ·····ତାହାହିଁ ଯାଙ୍କୁ କରୁଥିଲା ସୃଷ୍ଟିରେ ବନ୍ଧନଧର, ନ୍ୟାୟରେ ବଶମ୍ବର ।



ଅଥଚ ସ୍ୱାଙ୍କର ସ୍ୱଗର ଉଦୟ ଶଙ୍କର ?

ନଟରାଜ ରୂପେ ଦର୍ଶକଙ୍କୁ ଯେତିକ ମୁଗ୍ଧ କଲେ···ଅର୍ଦ୍ଧନାରୀଶ୍ୱର ରୂପରେ ସେ ପ୍ରତିମା ସେତିକ ଫାଟିଗଲା !

ପ୍ରଜାନୁଗ୍ରହ ବଞ୍ଚିତ ହୋଇ···ଅନାଦରର ଆଘାତରେ···ପ୍ରତିଷ୍ଠାନର ଛାତ୍ରଙ୍କୁ···ଯେଉଁ ଅଭିଶାପ ଦେଇଗଲେ :

"ଯାହାଙ୍କୁ କରନ୍ତ ଅପମାନ, ଅପମାନେ ହେବ ତୁମେ ତାଙ୍କର ସମାନ" !



ଅଭିଶାପ ଓ ଆଶୀର୍ବାଦ···ଉଭୟ···ସୁକର୍ମର ଫଳ ।

ବିଧାତାଙ୍କ ବ୍ୟାଙ୍କ ଖାତାରେ···ଜମାଦିଆତ ହିସାବରେ ନାକାବାକ ହଉଚଲେ···ମହାଜନ ହୋଇଯାଏ ଖାତକ ।

ତେଣିକି···ଏ ତୃଣ···କାଏ କେମିତି ଶୁଙ୍ଘିଲା···ତା ଉପରେ—

"ପ୍ରାଣୀର ଭଲ ମନ୍ଦ ବାଣୀ    ମରଣ କାଳେ ତାହା ଜାଣି ।"

ଅର୍ଜୁନ ବୋଲ ଗୀତା···ଉର୍ବଶୀଙ୍କ ଅଭିଶାପକୁ ଆଶୀର୍ବାଦରେ ପରିଣତ କରିପାରିଥିଲେ ?

ବଡ଼ ଭାଇ ଧର୍ମରାଜଙ୍କୁ···ଆଉ କାଏ ମୁହଁଉପରେ କହିଦେଇ ପାରିଥାନ୍ତା :

"ନ ବ୍ୟାଜେନ ଚରେତ୍ ଧର୍ମଂ" ?

ଆମେ ପ୍ରତ୍ୟେକେତ···**ଧର୍ମ—ଛଦ୍ମ—ଧୂର୍ତ୍ତ** ।

ତେଣୁ—**ଆସକ୍ତ—ବାପକା୪** ।

କୁରୁ ସଭାରେ ବିବସ୍ତ୍ରା ଦ୍ରୌପଦୀଙ୍କ ସେ ଅଭିଶାପ···ଆଜି ଯାଏ ଦୁନିଆକୁ **ତୋର—ମୋର**·····**ଧନୀ—ଗରିବ**···**ଗୋରା—କଳା**, ···**ପାଣ—ବ୍ରାହ୍ମଣ**···**ହିନ୍ଦୁ—ପଠାଣ**···ଏହିପରି ··· ଭେଦାଭେଦରେ ଅଥୟ କରୁଛି ।

ମୋରାରଜୀଭାଇ କଣ ତୁଚ୍ଛାକୁ କହୁଛନ୍ତି :

**ଏଭୂମିର ଆତ୍ମା ସହିବାରେ ସମୃଦ୍ଧ** ।

ଗୋପବନ୍ଧୁଙ୍କ ଶତବାର୍ଷିକ ପାଳିଲୁ···ମାତ୍ର ତାଙ୍କର ସେ ପଦଟିକୁ, ···କେତେ ଆତ୍ମସ୍ଥ କଲୁ ?

"ପ୍ରେମ ବିନା ସହେ...ସବୁ ସଖ ପାଏ"।

ଧର୍ମର ଖେଳ ପ୍ରେମରୁ ତ...ଧନଞ୍ଜୟ...ରାଜ ବେଶ ଛାଡ଼ି...ଅରଣ୍ୟରେ ରୂପେ...ବୃହନ୍ନଳା ବେଶରେ...ପ୍ରାପ୍ତି—ପୁଣ୍ୟ...ଅର୍ଜନ କରି ପାରିଥିଲେ ?

ଯାହାଙ୍କ ପୌରୁଷରେ ଚିତ୍ରାଙ୍ଗଦା ଠାରୁ ନାଗରାଜଙ୍କ କନ୍ୟା ଯାଏ ମୁଗ୍ଧ ହୋଇଥିଲେ...ସେଇ ପୁଣି କପଟ ନପୁଂସକ ବୃହନ୍ନଳା ବେଶରେ... ଚିହ୍ନା ପଡ଼ିଲେ ନାହିଁ ?

"ସ୍ୱଧର୍ମେ ନିଧନଂ ଶ୍ରେୟ"।

●

କୁମାର ସ୍ୱାମୀଙ୍କ ଶତବାର୍ଷିକୀ ପାଳନ୍ତୁ। ମାତ୍ର ତାଙ୍କ PASSIONର ଘନ-ଘାନାଘ ଫୁଟୁଛିକି ? ବିଷ ପାନ କରି ନୀଳକଣ୍ଠ ହେଲେ କିନା ?

ପ୍ରତିବାଦୀ **ସାର୍ତ୍ରେଙ୍କ** ଭାଷାରେ;—

OH YOU LOFTY, TROUBLED SOULS, WHO USE THE DEAD TO EDIFY THE LIVING, AND ABOVE ALL, TO EDIFY YOURSELVES, TRY, IF YOUCAN, TO FIND IN HIS EXCESSES THE SHINING PROOF OF HIS PASSION.

ସାର୍ତ୍ରେଙ୍କ ସାହିତ୍ୟ ରସାସ୍ୱାଦ ନୁହେଁ ବୋଲି କହିଲେ...ହରମୋହନ୍ ଦେବଙ୍କ ସିଦ୍ଧାର୍ଥ ଓ କମଳା ମଧ୍ୟରେ ଯେଉଁ ସଂଳାପ ଦୁଇ ପଦ :

କମଳା :

—ପଥରେ ଜଣେ ପ୍ରେମକୁ ମାଗି ନେଇ ପାରେ, କିଣିନେଇ ପାରେ କିମ୍ବା ଉପହାର ରୂପେ ପାଇ ପାରେ—କିନ୍ତୁ କେହି କେବେ ଚୋରି କରିପାରେ ନାହିଁ।

ସିଦ୍ଧାର୍ଥ :

—ତାହାକୁ ଧନ କେଉଁଠୁ ପାଇବ ?

ମୁଁ ଚିନ୍ତା କରି ପାରେ...ଅପେକ୍ଷା କରିପାରେ...ଉପବାସ ରହିପାରେ

କମଳା :

—ଆଉ କହୁ ପାର ନାହିଁ···?

ସିଦ୍ଧାର୍ଥ :

—ନାଁ ।···ଆଉ କହୁ ନୁହେଁ···ହଁ କବିତା ରଚନା କରୁଥାଏ ! ତେବେ···ତୁମେ କଣ ମୋର ଗୋଟିଏ କବିତା ପ୍ରତିଦାନରେ ଗୋଟିଏ ଚୁମ୍ବନ ଦେଇପାରିବ ?

କମଳା ଓ ସିଦ୍ଧାର୍ଥର ଏ ସଂଳାପ ଲେଖକଙ୍କ ୪୨ ପୃଷ୍ଠାର ଅନୁସୃଜନ ;



ମୂଳକୁ ନ ଜାଣି ଡାଳରେ ଚଢ଼ି···ଆମ କଳା, ଶିଳ୍ପ···ସାହିତ୍ୟ ତଥା ସଂସ୍କୃତି ସବୁ···ଚଳନରେ କହୁଛେ ଆଧୁନିକ ।

ABSURD—OFFBEAT—NEW-WAVE—AVANT—GARDE—ର TEXTUREରେ—*TALET* ନା,—*T*ONE—*T*ECHNIQUE ନା TRAUMA ?

ଖାଲି ପାଠରେ···ପାଉ ନେ ।

ବେକ ଆସିଛି···ବ୍ରଜନାଥ ବଡ଼ଜେନାଙ୍କ ଭାଷାରେ···

'କିଏ ପାଉ, କିଏ ମରଦ ଚାହୁଁ' ।



ଜନତା ଶାସନର ଶିଳ୍ପମନ୍ତ୍ରୀ ଆଲୋଚନାର···ଜାନୁୟାରୀ ୭ ତାରିଖ ସନ୍ଧ୍ୟାରେ ଦିଲ୍ଲୀ ଆକାଶବାଣୀରୁ···୪୭ ବର୍ଷିୟ ଫର୍ନାଣ୍ଡିସ ଦେଇ···

INTEGRITY—COMMI*T*MENT *T*O COUN*T*RY ଓ PUBLIC—CHARAC*T*ER···ତିନୋଟି ଗୁଣ ତାଙ୍କ ନାକ ଦାଗ କାଟି ଦେଲେ ତାହାହିଁ ତ ଅଟେ କହୁଛି···ସଞ୍ଜୟ ଗାନ୍ଧୀ···ମେନକାଙ୍କ ···**ସୂର୍ଯ୍ୟ** ପତ୍ରିକାକୁ ।

ଫର୍ନାଣ୍ଡିସଙ୍କ ସହଧର୍ମିଣୀ ହୁମାୟୁନ କବୀରଙ୍କ ଝିଅ । ଆମର ସମୁଦ୍ରକୂଳ ଗୋପାଳପୁରରୁ ଇନ୍ଦିରାଙ୍କ ଜରୁରୀ ଘୋଷଣାରେ···ଗର୍ଭବତୀ ପତ୍ନୀଙ୍କୁ ଛାଡ଼ି ଫର୍ନାଣ୍ଡିସ୍ ମାଟିତଳେ ଗାଏବ ହୋଇଥିଲେ ।

ଛଦ୍ମ ବେଶରେ ବରୋଦା ବୋମା ମାମଲାରେ ଗିରଫ ହୋଇ ଜେଲ ଭିତରୁ···ଜିତିଲା ଭୋଟରେ ଲୋକ ସଭାକୁ ଜିଣି ଆସି ମନ୍ତ୍ରୀତ୍ୱରେ ବସିଛନ୍ତି ।

ଶଶୁର ହୁମାୟୁନ କବୀର୍ ଅଧ୍ୟାପକରୁ···କେନ୍ଦ୍ର ସଂସ୍କୃତି ମନ୍ତ୍ରୀ ହୋଇ, ପ୍ରାଚ୍ୟ ଓ ପ୍ରାଶ୍ଚାତ୍ୟ ଦର୍ଶନର,···ସେଇ ଜନ ଶ୍ରୁତି ଅନ୍ୱେଷଣ କରିଇଯାଇଛନ୍ତି···ତାହାଙ୍କୁ ତ ଆଜି ତାଙ୍କ ଜାମାତାଙ୍କୁ ପଥ ଦେଖାଉଛନ୍ତି ?

ନହେଲେ ବିଦେଶୀ ବଣିକ କୋକାକୋଲା ବୋତଲ ପାଣି ପିଆଇ, ···ମାତ୍ର କେଇ ଲକ୍ଷ ମୂଳଧନରେ ବାର୍ଷିକ କେଇ କୋଟି ଟଙ୍କା ଲୁଟି କରୁଥିଲେ । ତାଙ୍କର ସେ ବେପାରକୁ ତ ଉଠାଇଦେଲେ ?

ତଥାପି ମେନକାଙ୍କ ସୂର୍ଯ୍ୟ ପତ୍ରିକାରେ···ଫର୍ନାଣ୍ଡିସ୍···ବିଦେଶୀ କୁବେରଙ୍କ ଭଡ଼ାଟିଆ ବୋଲି ପ୍ରଚାରିତ ?

ପରକୁ ଅପବାଦ ଦେଇ ଆତ୍ମ ସନ୍ତୋଷ ଲାଭ କରିବା ହେଉଛି··· ଅକ୍ଷମର ଚିତ୍ତବିନୋଦନ ।

ଫରନାଣ୍ଡିସ୍‌ଙ୍କ ଆମନ୍ତ୍ରଣରେ ଜର୍ମାନୀର ଚ୍ୟାନ୍‌ସେଲର ଉଇଲି ବ୍ରାଣ୍ଡ୍ଟ ଦିଲ୍ଲୀକୁ ଆସିଲେ ?

ନୋବେଲ ପୁରସ୍କୃତ ଏମ୍‌ନେଷ୍ଟି ଇଣ୍ଟର ନ୍ୟାସ୍‌ନାଲ ଫର୍ନାଣ୍ଡିସ୍‌ଙ୍କ ମୁକ୍ତି ଲାଗି ଆନ୍ଦୋଳନ କଲେ ?

ଇନ୍ଦିରାଙ୍କ ବୋହୂଙ୍କ ଗୁଣ୍ଡା ପାର୍ଟି ଶିବନାହିଁ ?

ମେନକାଙ୍କ ପିତା ପରା ଆତ୍ମହତ୍ୟା କରି ମଲେ ?

ମାତା···ପତ୍ନୀ···ସାହା ତଦନ୍ତର ଆସାମୀ ହୋଇଛନ୍ତି ?

ତଥାପି ସ୍ୱାମୀ ସଞ୍ଚୟିତ ଧନ ବଳରେ ଯୁବକଂଗ୍ରେସୀଙ୍କ ନେତା ?

ଅପର ପକ୍ଷରେ ଫର୍ନାଣ୍ଡିସଙ୍କ ଶାଶୁ,ଆମର ମାଳତୀ ଚୌଧୁରୀଙ୍କ ଅନୁରୋଧକୁ ଏଡ଼ାଇ ନ ପାରି···ଢେଙ୍କାନାଳରେ ନନ୍ଦିନୀଙ୍କ ବିପକ୍ଷରେ··· ନିର୍ବାଚନ ପ୍ରଚାର କଲେ ?

ମଣ୍ଡରେ—ଜାତି ନାହିଁ । ନିଷ୍ଠାରେ ତୃଷ୍ଣା ନାହିଁ ।

"ସ୍ୱଧର୍ମେ ନିଧନଂ ଶ୍ରେୟଃ ।"

ପୁଣି—ଯାଃ ନଚ୍ୟୁସଃ ସ୍ୱଧର୍ମ ।"

ଯାହାଠାରୁ ଆଉ ଶ୍ରେଷ୍ଠତର ନାହିଁ ସେହି ସତ୍ୟର ସନ୍ଧାନହିଁ ମାନବର ସ୍ୱଧର୍ମ ।

"ଛୁଆ ଛଟକେ ଗଲୁରୁ ମାଉଲେ କଜଳ ପାତି" ।



ସୁଭାଷ ବୋଷଙ୍କଠାରୁ ମାନବେନ୍ଦ୍ରଙ୍କ ଯାଏ କେହୁ ଯନ୍ତ୍ର ନଥିଲେ ଯତ... କିନ୍ତୁ ତାଙ୍କ ଦେଶାତ୍ମବୋଧ...ତାଙ୍କ ବୈପ୍ଳବୀକ ଚେତନା...କଣ ତାଙ୍କୁ...ବିଦେଶିଙ୍କ ଭାଡ଼ାଟିଆ ବୋଲି ବଦନାମରୁ ରକ୍ଷା କରି ପାରି ଥିଲା କି ?

ସିଏ ଗାନ୍ଧୀଙ୍କୁ ଗୁଳି କରିଥିଲେ...କମ୍ପା ଗାଳି ଦେଉଥିଲେ... ସେଇତ ଆଜି ବେଶୀ ଗାନ୍ଧୀ—ମାର୍ଗୀ ବୋଲି...ଡାକ ପିଟୁଛନ୍ତି ?

କାଏ କେଉଁର କଏ ଗାର ସେ ପ୍ରମାଣ ମହାକାଳର କଷଟିରେ ।

ଭଡ଼ାଟିଆଙ୍କ କୀର୍ତ୍ତନରେ ଯାହାଙ୍କ ବଞ୍ଚିଥିବା ସିଏତ ଧର୍ମାନନ୍ଦ ବ୍ରହ୍ମଚୂଡ଼ଙ୍କ ଭଳି ତଦନ୍ତ କମିଶନ ବା ନାଗାଧର୍ଷଣର ଆସାମୀ ହେଉଛନ୍ତି ।

ଆକାଶରେ ଉଡ଼ିବେ ବୋଲି ଲୋକ ଜମେଇ ପୁଲିସ ଗିରଫ ହେଉଛନ୍ତି ।

କୌପିନ ସିଦ୍ଧ ବନ୍ଧ୍ୟାକୁ ଗର୍ଭବତୀ କରୁଛନ୍ତି ?

ବିଜ୍ଞାନର ବିଜୟ ପଥରେ...କେଇ ଦିନ କେଉଁ ଜଣକୁ ଦୈବୀଶକ୍ତି ଦେଖାଇ ମୁଣ୍ଡିଆ ମରାଇବ ?

ତଥାପି ଯାହାଙ୍କ କୋଥଳି ଭିତରୁ କଙ୍କଡ଼ା ବାହାରୁଛନ୍ତି...ସିଏ ଭଗତଙ୍କୁ ଭଡ଼ାଇ ମୁଣ୍ଡିଆ ମରାଉଛନ୍ତି—

"ଦେଖ ଏ ହରିଙ୍କର ଗତି
ଝୁଲୁ ଠେଙ୍ଗା ବୁଲାଉଛନ୍ତି ।"



ଔଷଧ ନଖାଇ ତାଟିଆ କାମୁଡ଼ିଲେ କଣ ବ୍ୟାଧି ଆରୋଗ୍ୟ ହେବ ?

ସେଇଥି ଲିଖିତ—

"କୋଳି ଖୋଇଛୁ ସିଏ
ହଗେଇ ନେଉ ସିଏ ।"

ସ୍କୁଲର ପୁସ୍ତକରେ...କେଇ ଦିନ ଏ ଧର୍ମ ଧୂର୍ତ୍ତଙ୍କ ବେପାର ଚାଲିଥିବ ।

ଓଡ଼ିଶା ରାଜ୍ୟ ଗଠନ ହେଲା ପରେ ଦେବୋତ୍ତର ଓ ଭୂସଂସ୍କାର ଆଇନ ?

କେଉଁଟି କେତେ କାର୍ଯ୍ୟକାରୀ ହେଉଛି ?

ଗୋପବନ୍ଧୁଙ୍କ ସେ ଚକାର—ମଠମାନ କୋଠ ହେଲାଣିକି ?

ଭୁସ୍‌ସ୍କାର ସିନା ଘୋଡ଼ ବେଗିଡ଼ ଦିବା ଭୟରେ ଅଟକ ଯାଉଛି ?

ଗାନ୍ଧିଙ୍କ Trusteeship ଧାରାକୁ ଗୋପବନ୍ଧୁଙ୍କ ସେ ଧ୍ୱନି—

"ଡାଲ ଭାଙ୍ଗିଲା କାଠ ବାନ୍ଧି
ମହନ୍ତ ଚେଲାର ମାର... ।"

୧୯୭୬ରୁ ୧୧୦ ଘରା ଜନତା ପ୍ରତିନିଧି ?

ଗାନ୍ଧୀ ଗୋପବନ୍ଧୁଙ୍କ ସେହି ଚଳକୁ ଓଳାଇ ଦେଲେ ବା...ମୋ ପ୍ରେରକ ଚରଣ ସିଂହଙ୍କ ଗାନ୍ଧି-ମାର୍ଗୀ ସାଧନ ଓ ପ୍ରତିଷ୍ଠାନକୁ ଠେଲିଦେଇ ପାରିବେ କି ?

ପଶ୍ଚାଶ ସିଦ୍ଧି...ବର୍ଷେ ବର୍ଷରେ...ଦେଶ ଉପରେ ପିଢ଼ାରେ ବସିଲେ...ସଦା ସିଲେଇ ଗିଟି ଅଥାନ ବଟେ...ସେ ବୋଧ କଣ ବର ଯାଞ୍ଚୀଙ୍କର ?

ବର ଘଣ୍ଟଆରରେ...ଢେଙ୍କୋଳି ବଜାଇଲେ ବୋଲି କିଏ...ପୁଅ ନହେବା ପାପ ମୁଣ୍ଡାଇବେ ।

ନା ମଲା ପୁଅକୁ ମହନ୍ତ ଫୁଙ୍କି ମଶାଣିକୁ ନେବେ ?

ପାରୁଶ ଲୋକରେ ମଲାପୁଅର ସଠିକରେ ସିଏ ମହନ୍ତର ଫୁଙ୍କନ୍ତି... ସିଏ ମଲା ସାଗିଂ ଭାଇ ନୁହନ୍ତି କ ଦେଶ ଉପର ଟେଙ୍ଗୁଆ ନୁହନ୍ତି ।

"ଗୌରବ ନଥିଲେ ଧରମ ହୁଏ କ ପ୍ରୀତି
ପରସ୍ପୁ-ଆଜକୁ ଧରି ପଢ଼ିଗଲେ
ଉଦର କ ହୁଏ ଶାନ୍ତ ।"



Charisma...ବା ମୋହିନୀ ଶକ୍ତି ହେଲା ଆମ କମ୍ୟୁନିଷ୍ଟି... ମାଲୁଣୀ ଫୁଲ ସୁଙ୍ଘାଇ ଭେଣ୍ଡା ମେଣ୍ଢା କରିବା ମେଜିକ୍ ।

ଗୁଣ ଚିହ୍ନେ ଗୁଣିଆ ।—
କାଉଁସ ହାଡ଼ରେ କାଳସୀ ଝାଡ଼େ ।

କାହିଁ ପାଣିରେ ନହେଲେ ଗୁଞ୍ଜୁଣି ମୁଠାରେ ମାଟିଆ କାମୁଡ଼ି କାଳସୀଙ୍କ ଚଳାଇବା ଘଣ୍ଟଣାଠି...ଆଜକି ଗାଁ ଗହଳିରେ କେଳାଙ୍କ କାରାମତି ?

କେଳାଙ୍କ ନାଗେଶ୍ୱର ଫୁଙ୍କାରେ ଗାତରୁ ସାପ ବାହାରନ୍ତି ।
ପୁଣି ସାପ କାଟି ଦେଖି ଯାହାଙ୍କ ଛନ୍‌କା ପଶେ ?
ଦଉଡ଼ିକୁ ସାପ ବୋଲି ଭ୍ରମ କରିବାଠି ବେଦ ବେଳୁ ଚଳିଆସୁଛି ?

ସିଏ ଯାଜକ ଦଉଡ଼ ବୋଲି ପରଖିବାକୁ ଗୁଡ଼ ଫୁଲାଇ ବାହାରିଲେ ତାଙ୍କରି ମୁଣ୍ଡରେ ତ ପଡ଼ିଲା···ପଣ୍ଡାଙ୍କ ଠେଙ୍ଗା ।

ମଣ୍ଡିରେ ଗୁଡ଼ି ଛୁଇଁ କୁଣ୍ଡଳ ହଲାଇ···'ଖପରଖିଆ' ଓ 'ଖପରଭଡ଼ିଆଁ' ବୋଲି ଯେଉଁ ଜାତି ବୈଷମ୍ୟ ପୁରାଇଲେ···ତାହାର ଫଳରେ ତ ଆଜି—

“ଦାର ବାଟି ବଲ ପଡ଼ିଆ ପଡ଼ିଲା,······
ଧନେ ଖାଇ ଧାଇ ଖାଇଲା ନାହିଁ ?”

ମାଇପଙ୍କୁ ଘର କଣରେ ପୂରାଇ···ପାଣି କଣ୍ଟେଇଙ୍କୁ ଦେଉଳ ବାହାର କରି; ପିଣ୍ଡା ଉପରେ ବସି ସିଏ ମହାଜନ ଚଳାଇଲେ···ତାଙ୍କର ଗୋଦର ଗୋଡ଼ କଣ ଆଜି ଜାଜପୁର କେଲ ଠେଲିପାରିବ···ନା ଯାଇକଳିଆକୁ ଗୋଡ଼ାଇ ଧରି ପାରିବ ।

“ଅନ୍ଧକୁ ହୋଇ ଅନୁଗତ
ଅନ୍ଧ ଯେସନେ ପଡ଼େ ଖାତ” ।



ଭାଗବତ ବଢ଼ାରେ କଣ ବାଉରୀ-ବ୍ରାହ୍ମଣଙ୍କ ବାଛନ୍ଦ ?

ଓଟାରେ ବସି ଭଉଁରରେ ହରିବୋଲ ଫକାଇଲା ବେଳକୁ କଣ କଣ୍ଡରା-କରଣଙ୍କ ଭେଦ ?

ଯେ ଭେଦ ଚଳୁଥିଲା···ଯେତେବେଳେ ଭୋଗରେ···ମିଠାଇର ହରିଲୁଟ ବେଳେ···କବାଟ ସେ ପାଖ ଶବ ସାନାର ହରିବୋଲ କାନରେ ପଶୁ ନ ଥିଲା ।

ଜନତା ଶାସନରେ କଣ ସେଇ ମୁହଁ ବନ୍ଦ ଫାଙ୍କୁଆ ଚଳୁଛି କି ?

ଏବେତ—“ସବେ ହୋଇଣ ଏକ ମୁଖ ବୋଲନ୍ତୁ ଗଣ୍ଡବକୁ ରଖ” ?

ଓଙ୍ଗା ବୁଡ଼ିଗଲେ ଯାହାଙ୍କ ଯୋଗି ପଇତା ଛିଣ୍ଡି ହୋଇଯିବ···ତାଙ୍କ ମୁର୍ଦାର କଣ···କାଛୁଆ ପିନ୍ଧା କଣ୍ଡରଙ୍କ ଠାରୁ ଅଲଗା ଭାସିବ ।

ସେ ଦୃଶ୍ୟ ଆମର ଭିତରେ···ରାଜନଗର ବଢ଼ିରେ ସିଏ ଦେଖିଥିବେ ସିଏ ନ ଶିଖିଲେବି···ଠେଙ୍ଗିଲେ ଶିଖିବେ ?

ଯେଉଁଠି ସିଏ ଅଣ୍ଟାରେ ନୋଟବିଡ଼ା ଗୁଞ୍ଜି ମୁର୍ଦାର ଭାସିବା ଦେଖିଥିବେ···ସିଏ ଲକ୍ଷ୍ମୀଙ୍କୁ ଉଦ୍ଧାର କରିବାକୁ ଯାଇ···ଯାତ ଡାଳି ପାଣିରେ ବୁଡ଼ି···ଅଣ୍ଟା ବୁଡ଼ିଆ ନୋଟ ବିଡ଼ାକୁ···କେମିତି ସମ୍ଭାଳିବେ ?

ସମ୍ମାନବେ···ସବୁ ସାଇତାଧନର ସାଧାରଣ-ଘୋଷଣା କରି କୋଠ ଘାଣ୍ଟିରେ ଜମା ରଖିବେ ।

ପ୍ରକାଶ୍ୟ ଅର୍ଜନ ଅତିରିକ୍ତ ଧନକୁ କେଇଜଣ ଘୋଷଣା କଲେଣି ?

ନାଁ ଓଲଟା କଳାଧନକୁ ଧଳା କରିବାର ପ୍ରଚେଷ୍ଟାରେ, ପ୍ରଧାନମନ୍ତ୍ରୀଙ୍କ ଭାଷାରେ···ମନ୍ତ୍ରୀ ମେମ୍ବରଙ୍କୁ ମଦ ମାଇକିନା ଯୋଗାଇ···ଆପଣା କାମ ହାସଲ କରିନେବା କମିଆର କନ୍ଦାବାଙ୍ଗା ଜମୁ ଜମୁ କାର ।

ବ୍ୟକ୍ତି ପୂଜାର ସେ କନ୍ଦାବାଦ ସବୁ···ଜନତା ଶାସନରେ ବାରଣ ହେଲଣି ?

ମୋରାରଜୀ ବୋଲି ସିନା ରୋକ୍ ଠୋକ୍ କହିଦେଲେ—

ମୋ ପୁଅ ବୋଲି କଣ···ଆଇନ କାଟୁ କରିବ ନାହିଁ ?

ଅପରାଧ କରିଛି ବୋଲି ପ୍ରମାଣିତ ହେଲେ ଦଣ୍ଡ ଦେବାକୁ ମୁଁ ହୁକୁମ ଦେବି ।

ରାମଙ୍କ ଅଭିଷେକ ବେଳେ···ଦଶରଥଙ୍କ ସେ ଘୋଷଣା—

ମୋ ପୁଅ ବୋଲି ପାତର ଅନ୍ତର କରି ନାହିଁ ।

ମୋ ବ୍ରତ—ଅବ୍ରତ ଚିନ୍ତା କରି ନାହିଁ ।

ଆଉ ଯେଉଁ ପଣ୍ଡିତଙ୍କ ପୁଅ ମାଙ୍କଡ ମାରିଲେ ଧୋକଡ଼ ବୋଲି··· ପ୍ରଶ୍ନର ଚଳାଇଲେ···ଆଇନ ବଦଳାଇଲେ ?

ତାଙ୍କର ପୁଅ ନାଶ ତ ଆଜି ଫଇଡ଼ ଭିତର ପାଣି ଖାଇ ନଜାଣି··· କଟୁରରେ କଡା ଛଡ଼ାଇ ନପାରି,···ପଥରରେ ପିଠି ଘାଟିରେ ପୂରାଇବା ପୂର୍ବରୁ, ପାଣିରଜ ତଳେ ବୁହାଇ ଦେଉଛନ୍ତି ? ମୁଠି ମର୍କଟ ନ୍ୟାୟ···



ପଣ୍ଡିତଙ୍କ ମାଟିତଳ କମିଆଦ ତ···ଉପକରଣଙ୍କ Notes form under ground ବେଳେ ?

ସିଏ ନେଉଳକୁ ଅଫିମ ଖୁଆଇ ମାଠିଆରେ ପୂରାଇଲେ···ତାଙ୍କର ଉଦରରେ ତ ଡ଼ାମଣା ବୁଲୁଛନ୍ତି ।

"ଆରେ ଡ଼ାମଣା ବୁଲି ବୁଲି କରି
ସେଇ ଅଗଣା" ।

ଆମ ଶିକ୍ଷା ସଂସ୍କୃତି ମନ୍ତ୍ରୀ ପଦ...**ଓଡ଼ିଶା ବାହାରେ ଓଡ଼ିଆଙ୍କ** ଶିକ୍ଷା ଓ ଜୀବନର ସନ୍ଧାନ କରନ୍ତେ...ତେବେ ସିନା ଜଣାପଡ଼ନ୍ତା କାଳିମାଟି କଲିକତା, ଆମେରିକା ଇତ୍ୟାଦିରୁ କେତେଟଙ୍କା ମାସକୁ ମନି ଅର୍ଡର ଆସୁଛି ?

ଦାଦନ କୁଲିଙ୍କ ଦୁର୍ଦ୍ଦଶା, ଦୁର୍ଗତି କେଇ ବର୍ଷ ପରେ ନଜର ପଡ଼ିଲା ? ଗୃହ ବଗିଚା କୁଲି' ଗୃହିଣୀ ହେଉଛି...ଆମ ଗାଁ ଦେବୀଙ୍କ...ବନ୍ଧା ପଡ଼ିବା ବେପାର ?

ଦାଦନ କୁଲିଙ୍କୁ ଖଲାସ କଲା ବେଳକୁ ଆଦିବାସୀ କୁଲି କାମିନୀଙ୍କୁ କିଣିନେଇ...ଦେଶ ବିଦେଶରେ ବିକ୍ରି କରି ଦେଉଛନ୍ତି । ଆମର ଏଠି କୁମ୍ଭୀର ଛୁଆଙ୍କ ମରଣର ନିବାରଣ ଚାଲିଛି ?

ବଡ଼ଆଳି କୁମ୍ଭୀରଙ୍କ ଚମଡ଼ା ପଣ୍ୟ ଲକ୍ଷପତିଙ୍କ ସଉକ ଯୋଗୀ ?

ଆମ ସମୁଦ୍ର ଚିଙ୍ଗୁଡ଼ି ହେଉଛି ତାଙ୍କ ଚକ୍ଷୁ ମୂଳ ଖାଦ୍ୟ ।

ଏଣେ ଜାଲୁଆ କେଉଟ ଧରନ୍ତି ମାଛ ଖାଆନ୍ତି କଙ୍କଡ଼ା । ପୃଥିବୀରେ ଚିଙ୍ଗୁଡ଼ି ଗୋଟିଏ ଅମୂଲ୍ୟ ମୂଲ୍ୟ । ଅଥଚ ଚିଙ୍ଗୁଡ଼ି କାଟିବାରେ ସାତୁଆଙ୍କ ଚାଲିଛି ।

ଚଟକଳରେ କେତେ ଓଡ଼ିଆ କୁଲି ? ବନ୍ଧ କାମରେ କ୍ୟାନାଲ କାମରେ ଓଡ଼ିଆଙ୍କ ସମଜୁଲ କିଏ ?

କଲିକତାରେ ସବୁଠି କାନ୍ଧୁଆ ଓଡ଼ିଆ ଅଭିବ୍ୟକ୍ତି ତ ସବୁରି ଗାଡ଼ିର ଉଦ୍ଭାବନ ।

ବିଦେଶୀ ବେପାରୀ ସବୁଠିରେ ଠକିଲାଗାଇ...ଯୋଡ଼ାଯୋଡ଼ି...କାମ ଚଳାଇ ନେଲେ ସିନା...ଜାହାଜ ଭିତରେ ଥାଇ ଲଗାଇବା କୌଶଳ...ଏକା ଓଡ଼ିଆଏ ଶିଖିଥିଲେ ବୋଲିତ ବର୍ମାକୁ ଯାଇଥିଲେ ?

ଦଣ୍ଡକାରଣ୍ୟଠାରୁ ଚନ୍ଦ୍ରପୁର ଯାଏ...ବିଦେଶୀ ଚଳାଚଳଙ୍କୁ ଆଶ୍ରୟ ଦେଇଛୁ ବୋଲି କଣ...ତାଙ୍କୁ ଆତ୍ମୀୟ କରିପାରିଛୁକି ?

ମଞ୍ଜୁଷା, ମେଦିନୀପୁର...ସରେଇ କଲା ସିଂହଭୂମିର ଓଡ଼ିଆଙ୍କ ପୁଅ ଝିଅ...ଆଉ କଣ ଭାଗବତ ବୋଲୁଛନ୍ତି ?

କଲେଜରକୁ ଫଲ୍ ଟିକାଲ୍‌ଇଜଡ଼୍ କରି ଯେ ମନ୍ତ୍ରୀ ମେମ୍ବର ହେଲେ ସେ ପଲିଟିକ୍ସକୁ କଲଚରାଲାଇଜଡ଼୍ କରିପାରି ଥିଲେ ସିନା ?

ଆଖି ଆଗରେ ଆନ୍ଧ୍ର ବଙ୍ଗଳା କଣ କରୁଛନ୍ତି ? ଆମ କଲେଜରେ ବା ସିନେଟରେ କେଇଜଣ ସର୍ବିନ୍ନ-ଓଡ଼ିଆ-ଅଞ୍ଚଳ-ଅଧିବାସୀଙ୍କ ଲାଗି କେତେ ଆସନ ସଂରକ୍ଷିତ ?

ସେଠା ସ୍କୁଲ କ୍ଲବକୁ କେତେ ଟଙ୍କା ସାହାଯ୍ୟ କରୁଛେ । ଆଦିବାସୀଙ୍କ ଲାଗି···ଯେତେ ଲକ୍ଷ ଟଙ୍କାର ବହି କଣା ହେଉଛି ବା କମ୍ବଳ କପଡ଼ା ବଣ୍ଟା ହେଉଛି···ସେଥିରୁ କେତେ ଭାଗ କାହା ପାଖକୁ ଯାଉଛି ?

କେଇ ହଜାର ଟଙ୍କାର ବହି କେଉଁ ଆଦିବାସୀଙ୍କ ଲାଇବ୍ରେରୀରେ ଅଛି ? ବଜେଟ ଟଙ୍କାର ଏଇ ବାରବାଟୀ ହାଇକୋର୍ଟ ନଥିରେ ମିଳିବ ।

ରାଜଧାନୀରେ ଯେତେ କୋଠା···ସେଥିରୁ କେତେଭାଗ ପ୍ରକାଶ୍ୟ ଅର୍ଜନରୁ ପୁଣି କେତେ ଭାଗ ପ୍ରଚ୍ଛନ୍ନ ଅର୍ଜନରୁ ?

ଫଳରେ ମୁଣ୍ଡ ଘୋଡ଼ାଇଲା ବେଳକୁ ଗଣ୍ଡି ଦିଶିଯାଉଛି । ଯାହାଙ୍କ ୧୪ ହାତ ଶାଢ଼ୀ ନ ହେଲେ ଲଜ୍ୟା ନିବାରଣ ହେଉନି···ତାଙ୍କର ସେଇ ୧୪ ହାତରୁ ୪ ହାତ କାଟି ଦେଲେ ତ କେଇଜଣଙ୍କର କଉପନି ହୋଇଯିବନି ?

---

# ଜନରାଜ୍ୟ ଦିବସ

ବିଂଶ ଶତକର ଚତୁର୍ଥ ଓ ଶେଷ ପାଦରେ ଯେଉଁ ଜରୁରୀ ଘୋଷଣା...ଏବଂ ତାର ୧୯ ମାସପରେ ଯେଉଁ ଲୋକ ସଭା ନିର୍ବାଚନ... ସେଥିରେ ଯିଏ ଯେତେ ଅର୍ଜନ ବା ବର୍ଜନ କରି ଥାଆନ୍ତୁ ପଛକେ, ୧୯୭୮–୨୬ ଜାନୁଆରୀ ଜନରାଜ୍ୟ ଦିବସ ଭାରତ ଇତିହାସର...ବୌଦ୍ଧିକ ବିପ୍ଳବ ପରଠାରୁ ଅନନ୍ୟ ୩ ହଜାର ବର୍ଷର ଗତି ଓ ପ୍ରକୃତିରେ ଏକ ସମ୍ପୂର୍ଣ୍ଣ ପରିବର୍ତ୍ତନର ଅଗ୍ରଦୂତ।

ସ୍ୱଦେଶୀ ଶାସନର ଆଦ୍ୟ ଆବେଗରେ ୧୯୫୦—୨୬ ଜାନୁଆରୀ ଦିନ...ଯେଉଁ ଜନରାଜ୍ୟ ମହୋତ୍ସବ ପାଳନ...ତାହା ତ ଥିଲା ଗାନ୍ଧୀ ମୃତ୍ତିକାଆର ଶ୍ରାଦ୍ଧଦିବସର...ସନ୍ତୁଷ୍ଟମ୍ ମୈତ୍ରୀ ଭୋଜନ। ବଡ଼ ବଡ଼ୁଆଙ୍କ ଆଶିଷ— ସଙ୍କୁଚିତ ଭୋଗ।

ତା' ଠାରୁ ଶାସନ ଓ ସମାଜ...ଶାସକ ଓ ଶାସିତ...ଧର୍ମ—ଦୈବ...ତୋର—ମୋର ଜାତି—ବର୍ଣ୍ଣ...ବ୍ୟକ୍ତି ଓ ବୃତ୍ତି...ଗୁଣ ଓ ପରିମାଣ, ମାପଓଜନରେ ଯେଉଁ କୁଆଁ କୁଚୁକା...ପାତର ଅନ୍ତର ପଶିଲା ତାରି ନାମ ପରାଧୀନ ପ୍ରେମ। ବିଂଶ ଶତକର ଶେଷପାଦ...ଏକଚ୍ଛତ୍ର ଶାସନର କର୍ମ କୌଶଳ। ପ୍ରଥମରେ ପ୍ରାଚୁର୍ଯ୍ୟର...ମୋହମୟ ଶକ୍ତିରେ ଯେଉଁ ଶୋଷଣ ଓ ତୋଷଣ... ପେଷଣ ଓ ପୋଷଣ ଚାଲିଲା ସେଥିରେ ସମ୍ପନ୍ନଙ୍କୁ ଜନ୍ମ କଲେ ସତ...କିନ୍ତୁ ସ୍ୱଧର୍ମର ଯେଉଁ ସମୂଳ ବିନାଶ ଘଟିଲା? ସେଥିରେ ଆଜ '**ରୀତି**' ର ସତ୍ୟ ରହିଲା ନାହିଁ। ଉତ୍ପାଦନ ଓ ବଣ୍ଟନ... ଆଗର ଓ ପଛର କଥା ଓ କାମ...ଅନ୍ତର ଓ ବାହାର...ନିତ୍ୟବ୍ୟବହାର ଭିତରେ...ଦରସାମ୍ୟର...ଶୃଙ୍ଖଳ—ସୁଷମା ରହିଲା ନାହିଁ। ବ୍ୟକ୍ତିବାଦର ପ୍ରସାଦ—ମୋହ...ଧନ ଜନ ଓ ବୁଦ୍ଧି ତିନି ବଳକୁ...ସେତିକି ଏକା ମୁଠାରେ ଠୁଳ କଲା...ଗୌରୀ, ବ୍ରାହ୍ମୀ, ବୈଷ୍ଣବୀ, ସୀତା ବି ସେତିକି **ଭୁକ୍ତର** ଅଣଆବୃତ ହେଲେ। ବିଜ୍ଞାନ ଓ ସଜ୍ଞାନ ଭିତରେ ପଶିଗଲା ଅଜ୍ଞାନ।

ଅଙ୍କକୁ ଧୋଇ ଅନୁଗତ । ଅଙ୍କ ଯେଉଁ ଖାତରେ ପଡ଼ିଲା ସେଥିରୁ ଉଧୁରିବାକୁ···ଯାର ଦୁନିଆରେ ମନ୍ଥନ ଦଣ୍ଡର ଯେଉଁ ପ୍ରବଳ ଘୂର୍ଣ୍ଣନ ଚାଲିଛି—ସେଥିରେ ଆଧାର ପାତ୍ର ଫାଟି ଯାଉଛି ।

ମାଟି ହାଣ୍ଡିକୁ ବଦଳାଇ ପିତଳହାଣ୍ଡି ବସାଇଲେ,···ଭିତର ସାମଗ୍ରି ଉକୁଟି ଯାଉଛି ।

କେଉଁ ବାଦଶାହା ଦିନା କେଉଁଦିନ କହିଥିଲେ—ଗ୍ରାମ ଜବ୍ ଗୁଜୁରେ ଦୁନିଆଗୁଜୁରେ···ଅଜିତ ଏଠି ଅଦୃଷ୍ଟ ବିଧାତା ପୁରୁଷ···ବ୍ୟକ୍ତି ସତ୍ତାରେ ସାକ୍ଷାତ । ବ୍ୟକ୍ତି ମର୍ଯ୍ୟାଦାରେ ପ୍ରତିଷ୍ଠିତ । ବ୍ୟକ୍ତି ମୈତ୍ରୀରେ ଛନ୍ଦା ଛନ୍ଦି ।

ସେ ଛନ୍ଦରେ···ବେକ ଚିପିପଡ଼ିଲେ—ଗାଇ ଚଳାଉଛି ପଘା ଛିଣ୍ଡାଇ ।

କାରଣ ଦୁନିଆ ଅଛି ବୋଲି ମୁଁ ଅଛି । ମୋର ନିହିତ ଆପଣଙ୍କର ସ୍ଥିତିରେ । ଆପଣଙ୍କର ସ୍ୱାର୍ଥ ମୋର ସଙ୍କଟ ।

ସୁତରାଂ ଆପଣଙ୍କ ସ୍ଥିତିଲାଗି ଆପଣଙ୍କର ସ୍ୱାର୍ଥର ସଂଯମ ଅପରିହାର୍ଯ୍ୟ ।

ନଚେତ୍ ପରସ୍ପର ସ୍ୱାର୍ଥର ସଂଘର୍ଷରୁ···ପରମାଣୁ ବିସ୍ଫୋରଣର ସଂହାର ଅନିବାର୍ଯ୍ୟ ।

ଗତକାଲି ଆଜି ଆସନ୍ତାକାଲି ହେବନି । ଏ ବିପ୍ଳବ ପରିପୂର୍ଣ୍ଣ, ପରିବର୍ତ୍ତନର ।

ତାଳି ପକାଇ, ପାଠବୁଢ଼ା ମୁଣ୍ଡ ଲୁଚାଇବା ବେଳକୁ ଗାଣ୍ଡି ଦେଖିଯାଉଛି !

ତେଣୁ ପରମ୍ପରା ଯନ୍ତ୍ରଯୋଗରେ ହିଁ ଅତୀତର ପରଂପରାରୁ ବର୍ତ୍ତମାନର ପ୍ରୟୋଜନ ଅନ୍ୱେଷଣ । ପୁନର୍ବୃତ୍ତି ନୁହେଁ ପୁନର୍ନବା । ଚଳନ୍ତି ଚଟିକୁ ଗୁଡ଼ି ଝୁଣ୍ଟିରେ ନଜର ନ ଦେଲେ ଚକ ଠକ ଠକ ।

ପ୍ରଣୀକରେ ହିଁ ମାନବର ପ୍ରକାଶଧର୍ମ । ମୁହଁ ଖୋଲିବା ଆଗରୁ ଠାରରେ କଥାବାର୍ତ୍ତା । ମୁଦ୍ରା ଯନ୍ତ୍ରର ଆବିଷ୍କାର ପୂର୍ବରୁ ଆମ ଅକ୍ଷର ଲିଖନ ମୁନିରେ—ପଥରରେ ନହେଲେ ତାଳପତ୍ର ପୋଥିରେ ।

ଅତଏବ ୧୯୭୮ ଜାନୁଆରି ୨୬ ଜନରାଜ୍ୟ ଦିବସରେ ସାଂବାଦିକର ଏ ଡାଏରି ଖଣ୍ଡିକ···ଆଗତ ଅନାଗତ ଶତାବ୍ଦୀ ଶେଷର ଉତ୍ତର ପୁରୁଷଙ୍କ···ଧ୍ୟାନ-ଅଧ୍ୟୟନ ରେ···ଦୀପ ଦେଖାଇପାରିଲେ ଅର୍ଦ୍ଧଶତକର ଶ୍ରମ ଓ ସନ୍ଧାନ ସାର୍ଥକ ମଣିବି ।

ଯେଉଁ କେଇଜଣ ସ୍ନେହ ସ୍ନିଗ୍ଧ ଓ ଶ୍ରଦ୍ଧାସ୍ପଦଙ୍କ ପ୍ରଜ୍ଞାସୂନରୁ ଏତକର ପ୍ରକାଶ···ସବୁ ନିନ୍ଦା ପ୍ରଶଂସା ତାଙ୍କର ।

ମୋର ଚିନ୍ତା ଓ ଭାବନା ମୋର ଆପଣା ଦିଗ୍‌ଦର୍ଶନ ଲାଗି । ଉଦ୍ଦେଶ୍ୟର ଉପାୟ ମାତ୍ର ।

"ଶ୍ଲେଠାକୁ ବସାଇ କାନ୍ଧରେ
ଅନ୍ଧ ଗୁଲଇ ଧିରେ ଧିରେ" ।

---

# ବା-ବାଟରେ ଆଲୁଅ

ଯୁବଲେଖକ ସମ୍ମେଳନ ବାଲେଶ୍ୱର ଠାରେ ମକର ସଂକ୍ରାନ୍ତି ବାସି ଦୁଇଦିନ, ଜାନୁୟାରୀ ୧୫।୧୬ରେ ହୋଇଗଲା । ବାରବର୍ଷ ତଳେ ଆରମ୍ଭ ହୋଇଥିଲା ପୁରୀ ସମୁଦ୍ର କୂଳରେ । ବାଲେଶ୍ୱର ବି ସମୁଦ୍ର କୂଳରେ । ଫରକ ଏତିକି ଗୃନ୍ଧପୁର ଠାରେ ଜୁଆର ଛାଡ଼ିଗଲେ ମାଇଲେ ଖଣ୍ଡେ ପଙ୍କୁଆ ହୋଇରହେ । ବାଲେଶ୍ୱର ବାଟେ ବିଦେଶୀ ଅସ୍ତ୍ର ଆମଦାନୀ କରିବାକୁ ବଙ୍ଗାଳୀ ବିପ୍ଳବୀଙ୍କ ଆୟୋଜନ । ମାନବେନ୍ଦ୍ର ରାୟ ସାଇକେଲ ଦୋକାନ କରିଥିଲେ । ବାଘା ଯତିନ ଏଇଠି ବନ୍ଧୁକ ଗୁଳିରେ ମଲେ । ପୁଣି ଏଇଠୁ ରେଶମ ରୁମାଲ କିଣି ଗୋରା ବଡ଼ ଲାଟଙ୍କର ବାଣିଜ୍ୟ ପ୍ରୋତ୍ସାହନ । ବାଲେଶ୍ୱରୀ ପଥର ଡାଟିଆ ପୁତୁଳିଆରେ ବିକ୍ରି । ଏଇଠି ପୁଣି ଭୋଟବଇରେ ସବୁ ଅଫିମ ଖିଆ । ନୀଳଗିରି ରାଜାଙ୍କ ସଙ୍ଗେ କନିକା ରାଜାଙ୍କ ସମ୍ପର୍କ । କନିକା ଜମିଦାରୀ ରାଜନଗରରେ ଯେ ବର୍ଷ କେଉଁ ତୋଫାନ ହୋଇଥିଲା ? ସେଠି ବଙ୍ଗାଳୀ ଶତ୍ରୁଙ୍କଙ୍କ ଗୃଷ । ବିଜୁବାବୁ ସେଇଠୁଁ ବହୁବର୍ଷ ପରେ ନିର୍ବାଚିତ ହେଲେ— ଭଞ୍ଜନଗରରେ ପରାଜୟ ପରେ । ପଦ୍ମଲି ମଳିକ ବିଜୁବାବୁଙ୍କୁ ଜାଗା ଛାଡ଼ିଦେଲେ । ସୁରେନ୍ଦ୍ର ମହାନ୍ତିଙ୍କ ନିର୍ବାଚନ ମଣ୍ଡଳୀ । ପାଦ୍ୱୈତ ଦୁଇ ପାଖରେ ଚାନ୍ଦିପୁର ଓ ରାଜନଗର ବିଶାଖାପାଟଣା ଠାରୁ ଗୋପାଳପୁର ଦେଇ ସମୁଦ୍ର କୂଳେ କୂଳେ କେତେ ବନ୍ଦର ପୋତି ହୋଇ ଯାଇଛି । ସେଇ ପାଣିରେ ବନ୍ଧ ପକାଇବା ବିଦ୍ୟାକୁ ତ ବମ୍ବେ, ବର୍ମା ଠାରୁ କଲିକତା ନଳୀ ଭିତରେ ହଜାର ହଜାର ଓଡ଼ିଆ ଯେଉଁ କୌଶଳରେ ଏବେ ଦାଦନ କୁଲି ହୋଇ ଯାଉଛନ୍ତି । ଗୋଟାଏ ଭୂଗୋଳ ଖଣ୍ଡରେ ପ୍ରକୃତି ସଙ୍ଗେ ଲଢ଼ି ଯେଉଁ ଲୋକେ ଯେଉଁ କଥାକୁ ଆୟତ୍ତ କରିପାରିଥିଲେ ଏବଂ ସେଥିରୁ ତାଙ୍କର ଯେଉଁ ଦକ୍ଷତା ଉପୁଜିଥିଲା ତାକୁ ସେତେବେଳେ ବିଦେଶୀ ବଣିକ ବେପାରୀ-ଶୋଷଣ କଲେ ଏବଂ ସେଥିଲାଗି ଯେଉଁ ଅଫିମ ଖୁଆଇଲେ ସେଇଥିରେ ଆମ 'ଚନ୍ଦ୍ରଭୂଷଣ' ଗ୍ରନ୍ଥ ଗୁଳିଖିଲା ଚୀନକୁ । ଗୋପବନ୍ଧୁଙ୍କ ସେଇ ପଦକ—'ଆସୁ ଯାଇ ମଡ଼ା

ପାଲଟିଗଲୁଣି । ସେଇ ଅଫିମ ଖୁଆଇ ସ୍ୱଦେଶୀ ଶାସକେ ଚୌକି ଚୌକସ୍ ହେଲେ । ଆଜି ପୁରୀ ରାଜଭବନ ପୁରୀ ଶିଶୁଭବନରେ ହେବ କି ନାହିଁ ବିବାଦ ଲାଗିଛି ଆଉ ସେହି ପୁରୀ ରାଜାଙ୍କ ଉଆସ ?

ପରମ୍ପରା ଓ ପରିବର୍ତ୍ତନ ଭିତରେ ଯୁବକ ଓ ବୃଦ୍ଧଙ୍କର ଜେନେରେସନ୍ ଗେପ୍ । ଯୁବକ ସାହାସୀ । ନେଲସନ୍‌ଙ୍କ ଭାଷାରେ ଦେଶର ଭବିଷ୍ୟତ ୨୫ ବର୍ଷ ତଳିଆ ଯୁବକଙ୍କ ହାତରେ । ଆମ ଗାଉଁଲି ଭାଷାରେ ଦୁଧ ଗୁଣ୍ଡିବା ଆଉ ଦୁଧ ଧରିବା ଯାଏଁ ପାଠ । ଜନତା ସରକାରରେ ତ ସେଇ ପଚିଶ ବର୍ଷ ମାପକୁ ୧୮ ବର୍ଷକୁ ଖସାଇ ଆଣିଦେବ ବୋଲି ବିଚାର ଚଳିତ । ପୁରୁଷକୁ ପୁରୁଷ ମତାନ୍ତର ନ ହେଲେ ପ୍ରଗତି କାହିଁ ? ଏକା ଘଟଣାକୁ କେହି ଦୁଇଜଣ ଏକା ଆସିଲେ ଏକା ଜାଗାରୁ ଦେଖିପାରନ୍ତି ନାହିଁ । ମତ ଭିନ୍ନ ନହେଲେ କିଏ ମୁନି ହେବ । ଅଥଚ ଏଇ ପରସ୍ପର ମତାନ୍ତର ଭିତରେ ପରସ୍ପର ବୁଝାମଣାର ଯେଉଁ ନୂଆ ଗୁଳା ଫୁଟୁଛି ତାହାହିଁ ତ କେଇ ହଜାର ବର୍ଷ ପରେ ଜନବିପ୍ଳବର ଆଦ୍ୟ ଉଷା ।

'ମଙ୍ଗଳେ ଅଇଲେ ଉଷା' ।

ଚନ୍ଦ୍ରପୁଅ ମେହେରଙ୍କର ସୁତା ଗଣ୍ଠି ଫିଟା । ମଣିଷ ଦେବତାକୁ କ'ଣ ଦେଇ ତୋଷଣ କରିବ । ସବୁତ ତାଙ୍କର ।

କେଉଁ ଦୁଇଜଣ ବଣିକ ପୁଅ କେଉଁ କାଳେ ବୁଦ୍ଧଦେବଙ୍କୁ ଏଇ ମାଟିକୁ ଆମନ୍ତ୍ରଣ କରିଥିଲେ କେଜାଣି ସେ ବୌଦ୍ଧ ବିପ୍ଳବକୁ ଯେଉଁ ପୌରୋହିତ୍ୟ ବାଦ ପଲମ ଘୋଡ଼ାଇ ଦେଲ...ଏବଂ ସେ ପ୍ରତିବିପ୍ଳବ ବାତୁଢରେ ପିପିଳି ମୁଣ୍ଡିଆ ଆଦ୍ୟର୍ଷି ସାଂଗ୍‌ନାଗ୍‌ଙ୍କ ଆସନତଳେ ଏବେ ବି ଯେଉଁ ବୈଶୁପଦାଗାଦିର ଅପ୍ରକାଶିତ ମାଳିକା ? ସେଥିରେ କୃଷକଙ୍କର ସେପଦକ—

ଫୁଲ ଫୁଟି ଯାଏ ଝଡ଼ି
ଫଳ ହୁଏ ଅଗାଡ଼ି
ଧାନ କଲା ଲୋକେ
ବାହାନ ନପାଇ ମଳଅଣ୍ଡ ଧରିଗୁଡ଼ି ।

ପାଠକେ ବାଲେଶ୍ୱରର ଯୁବଲେଖକ ସମ୍ମେଳନରୁ ତୋଷାଙ୍କ ଏ କୁହାଟ ପଦକ ବୁଝିବାକୁ ଯେଉଁ କେଇ ହଜାର ବର୍ଷର ଇତିହାସ ସେ ଗହ୍ୱରକୁ କିଏ ଖୋଳୁଛନ୍ତି । ବିଜ୍ଞମାନେ ବି ନଜାଣି ସାପଗାତରେ ହାତ ପୂରାଇବେ, ଅଥଚ ଅଙ୍କରେ ଯୋଡ଼ିଏ ମଡ଼ାଇ ଚୋର ବୋଲି ଚାଷୀକୁ କୋଡ଼ରେ ପୂରାଉଛନ୍ତି ।

କିନ୍ତୁ ପାରଦ୍ୱୀପ ବନ୍ଦର ଶିଳାନ୍ୟାସ ଦିନ ଭାରତ ଆବିଷ୍କାରକ ଗ୍ରନ୍ଥ ରଚୟିତା ଜବାହରଲାଲ୍‌ଙ୍କ ସେଇଁ ଜିଜ୍ଞାସା—

"ଯେଉଁ ଜାତି ଦିନେ ସମୁଦ୍ର ପାର ହୋଇ ତାର ଶିଳ୍ପ ସାମଗ୍ରୀ ସଙ୍ଗେ ସଂସ୍କୃତିକୁ ବୋହି ନେଇ ସ୍ୱଦେଶ ଭୂଇଁରେ ମୈତ୍ରୀ ରାଜ୍ୟ ପ୍ରତିଷ୍ଠା କରିଥିଲା ତାଙ୍କର ସେ ପ୍ରାଣ ଶକ୍ତି ଗଲା କୁଆଡ଼େ ?"

ବୁଡ଼ିଯାଇଥିଲେ ବି ସଢ଼ିଯାଇ ନାହିଁ । ତାର ପ୍ରମାଣ ଆଜି ବି ଇଣ୍ଡୋନେସିଆରେ, କାମ୍ବୋଡ଼ିଆରେ । ଯେଉଁଠି ଗୋରା କଳା ସୋଭିଏତ୍— ଆମେରିକାଙ୍କ ଭିତରେ ଯେଉଁ ଶୀତଳ ଯୁଦ୍ଧ ଲାଗିଛି ?

ଯେଉଁଠି ପୁଣି ଇଦି ଅମିନଙ୍କ ସବୁ ଯିଏ ନିଜେ ଦେବତା ବୋଲି ପ୍ରଚାର ଚଳାଇଛନ୍ତି ତାର ପ୍ରତିଧ୍ୱନି ତ ମଧ୍ୟପ୍ରାଚ୍ୟରେ ଇସ୍‌ଲାମୀ ଓ ଜିଉଙ୍କ ଭିତରେ ?

ଯୁଗାନ୍ତରର ଏ ବିପ୍ଳବକୁ ଯିଏ ଦେଖି ଦେଖୁନାହାନ୍ତି ସିଏ ଠେଂଗିଲେ ଶିଖିବେ ।

କୁମ୍ଭିର ଓଗାଳକୁ ମଝି ନଇରେ କଲେ ବି ଯେଉଁ କେଉଟଙ୍କ ଲାଜ ଖିଆ ଘୁଞ୍ଚୁ ନାହାନ୍ତି—ଯେଉଁ ମନ୍ତ୍ରୀ ମେମ୍ବରଙ୍କ ଅଯୂସ ବିଳାସ ଘୁଞ୍ଚୁନାହିଁ ? ସେମାନେ ତ ସେହିପରି ପଣ୍ଡିତ—ଯିଏ ବାପ୍ପା ଡାକୁଥିଲେ ପର 'ବା' କଲେ ବସା ଦୋହଲୁଥାଏ—କହ୍ନ କବାଟ କଳ ବସି ମାଧିଆ ମା ମୁହଁରେ ପ୍ରଚାର ଚଳାନ୍ତି ଯେ—'ମାଧିଆ ମୋର ଗାଁ ଯାକକୁ ଗାଳି ଦେଉଛି ।"

ଅନ୍ୟର ଦୋଷ ବାଛୁ ଯେଉଁ ଆତ୍ମସନ୍ତୋଷ ତାକୁ ଇ ତ ନୋବେଲ୍ ପୁରସ୍କାର ପ୍ରାପ୍ତ ରବୀନ୍ଦ୍ର ନାଥ—ଅକ୍ଷମର ଚିତ୍ତ ବିନୋଦନ ବୋଲି ଲେଖି ଯାଇଛନ୍ତି ।

ଆମର ପୁରୀ ଜାଗାଘର ଗୋଦରା କୁଟୁଣ୍ଡୀଙ୍କ ଧୋଇତା ମରା ?

'ବାଧିଲା ଜାଣି ଛମା'

କିନ୍ତୁ 'ମୁଦନାଇଁ ଗୋଡ଼ କଟୁଛୁ କେତେ' ଏଇ ମାଇପ ଉଗଟିକୁ କ'ଣ କହିବେ ?

ଖଣି—ବଣ—ପାଣିରେ ଯେଉଁ ସାଇତା ସମ୍ପଦ ? ତାକୁ ବିକି ଧନୀ ହେବାକୁ ଯିଏ ଯୋଜନା କରୁଛନ୍ତି ସେ କେଇ ଶହ ବର୍ଷରେ ପ୍ରକୃତିର ସେ ଦାନକୁ ଭରଣା କରିବେ ?

'ଇକୋଲୋଜି' ବୋଲି ଯେଉଁ ଝଙ୍କାଳଟି ବାହାରିଲାଣି ? ଆମ ସାତକୋଶିଆ ଗଣ୍ଡରେ କୁମ୍ଭିର ଛୁଆ ମରାଯାଉଛନ୍ତି । ଆମ ବଣି ସାଧୁ ସମ୍ପଦରେ ବନ୍ଦୀ ହେଉଛନ୍ତି ଅଥବା ଆମ ଟଙ୍କାରେ ବାଘୁଣୀ ଫିଲ୍ମ କେଉଁ ପ୍ରକାର ଝଙ୍କ କରି ବଜେଟ୍‌କୁ ବରବାଦ କରୁଛନ୍ତି ।

କୋଠ ପାଣ୍ଠିର ଯେ ଦାୟିତ୍ୱରେ ଥିଲା ଅର୍ଥମନ୍ତ୍ରୀ ଗୋଦାବରୀଶଙ୍କର ! ସିଏ ପାଚିଲା ତାଳଟିଏରେ ମାତୃଶ୍ରାଦ୍ଧ ସାରିଥିଲେ । ଆଜି ଆମର ଗୋପବନ୍ଧୁଙ୍କ ଭାର୍ଗବୀ କୂଳରେ ଧର୍ମପଦଙ୍କ ସମାଧି ବାଲିରେ ଯେଉଁ ମହାଦେବ ତୋଳିଥିଲେ ତାହାଙ୍କୁ ତ ଆଜି ବାଲେଶ୍ୱର ବୋଲି କେଉଁଠାରେ ଏକର ଦୋବୋଉର ଜମି ଭୋଗ କରୁଛନ୍ତି ?

ନଜରୁଲ୍‌ଙ୍କ ସେଇ ପଦକ—'ହେ ଦେବତା ମନ୍ଦିର ତୁମର ନୁହେଁ—ମଣିଷଙ୍କର !'

ବାଲେଶ୍ୱରରେ ଯୁବଲେଖକ ସମ୍ମେଳନ ହେଲା । ମାତ୍ର ଯୁବଲେଖକଙ୍କର ସେ ପୌରୁଷ ସାହସ କଳନା ଓ କଳ୍ପନା ସ୍ୱପ୍ନ ଓ ସାଧନା ଅଛି କି ? ନା ଖାଲି ହା ହୁତାଶ ? ଦାଅ ଦାଅ ଡାକୁଛି ।

ନେବ ଯେ ବାବୁ···ସମ୍ମାନ ସାଇତି ପାରିବତ ?

ସେଇ ଯେଉଁ ସାରୁଆ ବ୍ରାହ୍ମଣଟି ବାରପଟ ବାଛୁରୀ କଅଁଳରେ ବସି କାନ୍ଦିବାରୁ ଗାଁ ସାକ ଲୋକ ଚୁପ୍ ହେଲେ । ବଚ୍ଛୁରୀ ବାଛୁରୀଟିକୁ କେତେ ସଉକ୍‌ରେ ବଢ଼ାଇଥିଲ । ତାର କାନ୍ଦଣା···କ୍ଷୋଭ ଯିବାରୁ ନୁହେଁ—ଭୋକର ସତ୍ତା କ'ଣ ତାର ସୁଆଦ ବାରି ପାରିବ ସେଇ ଅବଶୋଷରୁ ! ଗାଁ ଲୋକଙ୍କୁ ଗୁହାରି—ମୋତେ ମାଗିଥିଲେ ତ ମୁଁ ଟିକେ ଲୁଣ ତେଲ ଦେଇଥାନ୍ତି ! କେଉଁଠି ପୋଡ଼ି ରଖିଛି କି ଦଶା କରିଦେବ ମୋ ବାଛୁରୀଟିର ।

ପାଠକେ ! ଫକୀର ମୋହନଙ୍କ ଜନ୍ମ ପୀଠରେ ଯୁବଲେଖକ ସମ୍ମେଳନ ହେଲା କିନ୍ତୁ ତାଙ୍କ ଉତ୍କଳ ଭ୍ରମଣର ବଣିକ ବୁଦ୍ଧିକୁ ଯେ ଆକ୍ଷେପ ?

ଆଜି ପରି ପ୍ରକାଶକଙ୍କ କୋଠା ପାଖରେ ଲେଖକଙ୍କ ହାତ ପତା । ସେନାପତିଙ୍କ ନାତୁଣୀ କହୁଛି—ଫକୀର ମୋହନ ଓଡ଼ିଆ ନଥିଲେ ! ଶୁଁ

ସେ ଓଡ଼ିଆଙ୍କ ପର ଆଚରଣ କରି ଜାଣିଥିଲେ—ଜଗନ୍ନାଥଙ୍କ ସାଲବେଗଙ୍କ ଜନ୍ମସ୍ଥାନ । ଫକୀର ମୋହନଙ୍କ ପୁଅ ମୋହିନୀ ମୋହନ ଦର୍ଶନ ଅଧ୍ୟାପକ ହୋଇ ବ୍ରାହ୍ମ ହୋଇଗଲେ । ମୟୂରଭଞ୍ଜ ମହାରାଜା ବ୍ରାହ୍ମହୋଇ ବଙ୍ଗାଳୁଣୀଙ୍କୁ ବିବାହ କଲେ । ଖଳୁବାବୁଙ୍କ ମାତା ବ୍ରାହ୍ମ । ନନ୍ଦ ଚୌଧୁରୀଙ୍କ ଭଉଣୀ ବ୍ରାହ୍ମ । ବଙ୍ଗଳାରେ ବେଦାନ୍ତରୁ ବ୍ରାହ୍ମର ଉଦ୍‌ଗମନକୁ ସମର୍ଥିଲେ ସିନା । ଡଃ ନିରଞ୍ଜନ ଦାସ କେଉଁମାଧ ବଳେ ଏ ଗବେଷଣା କରି ଖଣ୍ଡିଏ ଗ୍ରନ୍ଥ ପ୍ରକାଶ କରିଛନ୍ତି । ଆମ ସଂସ୍କୃତ ଯେତେନିଷ୍ଠାବାନ ସୀତାକାନ୍ତ ମହାପାତ୍ରଙ୍କର ଆକାଶବାଣୀରୁ—“our alienated kings men” ବୋଲି ଯେଉଁ କେଉଁଠି ପଦ ଉଚ୍ଚାରଣ ? ତାଙ୍କର ସାଙ୍ଗ ରମାକାନ୍ତ ରଥ ପର ଆଦିବାସୀ ସଙ୍ଗୀତକୁ ରେକର୍ଡ କରୁଥିଲେ ।

ସାହିତ୍ୟ ଆଜି ତଳକୁ ଚାହିଁବ ନା ଉପରକୁ ଚାହିଁବ ?

ଏବ୍‌ସର୍ଡ୍, ଅନ୍‌ଖାଟ୍ ଲେଖି ସିଏ ଆମେରିକା ବଜାରରେ ଯାଉ ବଢ଼ାଇବାକୁ ବସିଛନ୍ତି—ସେମାନେ ଏଲେକ୍‌ସହେଲିଙ୍କ roots ବହିଟିକୁ ଟିକିଏ ଓଲଟାନ୍ତୁ । ଆମେରିକାର ଜଣେ କଳାଅଧିବାସୀ ଯୁବକ ବାରବର୍ଷ ଲାଗି ତାର ପିତୃପୁରୁଜନ ଉତ୍ପତ୍ତି ଓ ପ୍ରଗତିକୁ ସନ୍ଧାନ କରି ଏଫ୍ରିକାରେ ଯାଇ ପହଞ୍ଚିଲା ଏବଂ ସେଠୁ ଦାସ ବ୍ୟବସାୟୀର ଯେଉଁ ଫର୍ଦ୍ଦିର ଛିଣ୍ଡାଇଦେଲା ତାହାହିଁ ତ Newyorks times ରେ ‘ମନୁମେଣ୍ଟର ସାଗା’ ସ୍ରଷ୍ଟା ବୋଲି **Act of faith Caurage and Love** ବୋଲି ଆଜି ବହୁ ବିଖ୍ୟାତ କରିଛି । ତାଙ୍କର ଏଇ ଉନହଜାର ଲକ୍ଷ ବିକ୍ରିତ ବହି ଖଣ୍ଡିକୁ ସଗର୍ବ ହୋଇ ଉତ୍ସର୍ଗ କରିଛନ୍ତି କୁବେରରାଜ୍ୟ ଆମେରିକାକୁ ସେ ଦେଶର ଜନ୍ମର ଦୁଇଶହ ବର୍ଷ ପୂର୍ତ୍ତିପର୍ବରେ...

ଆମର ଦିଅଁପଢ଼ିରେ ଯେଉଁ ସତ୍ତ୍ୱଧାରଦେଇ ବରବଧୂ କାମ୍ଭା ଷଠି ଘରର କଉଡ଼ିଖେଳଗା ? ତାହା ପୁରୋହିତଙ୍କ ମୁଣ୍ଡରେ ନା ବରଙ୍କ ମନଭିତରେ ପଶୁଛି କି ?

ଯୁବକ ଓ ବୃଦ୍ଧଙ୍କ ତଫାତ କଥାରେ ନୁହେଁ କାମରେ...ଧନରେ ନୁହେଁ ମନରେ ।

ଇଞ୍ଜିନପୁର ବାଟେଶ୍ୱରିଆ ଶହେବର୍ଷ ପାଏ କାମ୍ଭା ଏକତୋପାଳାକୁଣୀ ନବେବର୍ଷ ପାଏ ଯେଉଁ ସର୍ଜନା କରିପାରୁଛନ୍ତି ? ଗାନ୍ଧୀଜୀଙ୍କୁ ସିନା ୭୮ ବର୍ଷ

ବସ୍ତୁସରେ ଗୁଳି କରି ମାରିଦେଲେ କିନ୍ତୁ T. C. N. ୯୮ ବର୍ଷରେ ଯେଉଁ ଛବି ଆଙ୍କି ପାରିଛନ୍ତି । କବି ବ୍ଲାଙ୍କୋ ହ୍ୱାଇଟ୍‌ଙ୍କ 'Night and death' ର ଜିଜ୍ଞାସା ଚିତ୍ର—"If Light can thus deceive"

ଝିଲ୍‌ଲିକ୍‌ରେ ଜଳକା ।

ଆମର ସେଇ ମଫସଲିଆ, ଦଶହରା ଦିନ କଟକରେ ପହଞ୍ଚି ଆଲୋକରେ ଜଳକା ହୋଇ ଯାଇ 'ବାବାରେ ଆଲୁଅ' ବୋଲି ଚିତ୍କାର କରି ଉଠିଲା ? ତା ପର ପଦକ—ଝିଅର ଯାହା ହାଲେର୍—ତାକୁ କିଏ ସୁଝିବ କି ?



# ନିରାଶାର ଆଶା

ଦିଲ୍ଲୀରୁ ଫେରି ମୁଖ୍ୟମନ୍ତ୍ରୀ ରାଉତରାୟଙ୍କ ଘୋଷଣାରେ ମନ୍ତ୍ରୀ ସଂଖ୍ୟା ଆଉ ବଢିବନି—ଯେତେଜଣ ଆଶାର୍ଥୀଙ୍କୁ ନିରାଶା କରିଥିବ, ତା'ଠାରୁ ବେଶି ଗୁଣ ଯୁବକଙ୍କୁ ସମାଜସେବାରେ ଉଦ୍‌ବୁଦ୍ଧ କରିବା ଉଚିତ୍। ଏ ରାଜ୍ୟର ଭବିଷ୍ୟତ ନେତୃତ୍ୱ ଆଙ୍କିବ।

ଜନତା ଦଳର ୧୧୦ ଜଣ ଏମ୍. ଏଲ୍. ଏ. ଙ୍କ ଭିତରୁ ଯିଏ ମନ୍ତ୍ରୀ ନହେଲେ···ସେମାନେ ଜନତା-ନିର୍ବାଚନ ଇସ୍ତାହାରର···କ୍ଷମତା ବିକେନ୍ଦ୍ରୀକରଣ ଘୋଷଣାକୁ···ଜାବୁଡ଼ି ଧରିଲେ···ମନ୍ତ୍ରୀ ମାନେ ବାଧ୍ୟ ହେବେ ଯେ ନିଜମୁଣ୍ଡ ବୋଝକୁ ଲଘୁ କରି··· ଦଳୀୟ ଏମ୍. ଏଲ୍. ଏ. ଙ୍କୁ ଦାୟିତ୍ୱ ଦେଇ ପ୍ରତିଶ୍ରୁତିଗୁଡ଼ିକୁ ନିର୍ଦ୍ଦିଷ୍ଟ ସମୟ ମଧ୍ୟରେ ପ୍ରତ୍ୟକ୍ଷ ପୂରଣ କରିବାକୁ।

କ୍ଷମତାର ଏଇ ହସ୍ତାନ୍ତର ହେଲେ ସିନା ଯୋଗ୍ୟତାର ପରଖ? ନ ହେଲେ ତ—

"ଯାହାଙ୍କୁ ସହିଛି କନିଆ—ଶାଶୁ ଝିଅର ଉପରେ ମନ୍ଦ ବରଷୁ।"

ଗାନ୍ଧୀଜୀ ପରି ଲେଖି ଯାଇଛନ୍ତି ଯେ—ବ୍ରିଟିଶ୍ ପାର୍ଲାମେଣ୍ଟ ପଦ୍ଧତି ହେଉଛି ଏକ 'ବେଶ୍ୟା' ଯାହା···ବାହାରର ଗୃହ ବିନା···ପ୍ରସବଧନ୍ୟା ହୋଇ ପାରେନା।

ଜୟପ୍ରକାଶ ତ ସେଇ କଥା କହୁଛନ୍ତି। ଯେଉଁ ଯୁବକ ସରକାରୀ ବ୍ୟବସ୍ଥାପକ ବା ପ୍ରଶାସନିକ ସଂସ୍ଥାମାନଙ୍କରେ ସଂପୃକ୍ତ ନୁହନ୍ତି···ସେମାନେ ପ୍ରତିଷ୍ଠାନର ପରିଧି ବାହାରେ ଅହିଂସ, ଶାନ୍ତ ପୂର୍ଣ୍ଣ ଉପାୟରେ···ଜନତାର ମନକୁ ଓ ହୃଦୟକୁ ପରିବର୍ତ୍ତନ କରି ଜନତାର ବିଶ୍ୱାସ ଭାଜନ ହୁଅନ୍ତୁ।

"ଯୋଗକୁ ଯେଉଁମାନେ କ୍ଷମତାର ଚୌକିରେ ବସି ଯାଇଛନ୍ତି ସେମାନଙ୍କର ଆଦର୍ଶଗତ ପରିବର୍ତ୍ତନ ହୋଇ ପାରୁନାହିଁ । ଯୁଗଠନ ଭିତରେ ଯେଉଁ ତ୍ୟାଗ ଓ ପ୍ରେରଣା ଦରକାର ପ୍ରଯୋଜନ, ତାକୁ ତ.ଳି ତଳାଇ ବା ଏଡ଼ମିନିଷ୍ଟ୍ରେଟିଭ୍ ବ୍ୟବସ୍ଥାରେ କରି ହେବ ନାହିଁ ।"

ଜୟପ୍ରକାଶଙ୍କ ଏ ସ୍ପଷ୍ଟ ଉକ୍ତି 'ଜନତା' ପତ୍ରିକାର ପ୍ରତିନିଧି ଶ୍ରୀ ବିଜୟ ପ୍ରତାପଙ୍କୁ । ଆଉ ଗାନ୍ଧୀଜୀଙ୍କ ଟ୍ରଷ୍ଟିସିପ୍ ?

ଓକ୍ଟୋବର ଲୋହିଆ ପରି ଏକ ଆଇନ୍ ଯଦି ଲୋକସଭାରେ ପେଶ୍ କରିଥିଲେ ? କାହିଁକି ତାହା ହେଁପଡାଳକୁ ଓଜାଇ ଦିଆ ଗଲା ? ସେ କାରଣକୁ ଏବେ ଶ୍ରୀ ତରୁଣ ସିଂ ତଦନ୍ତ କମିଶନ ବସାଇ···ଦେଖାଇ ଦେଉଛନ୍ତି । ଯିଏ ପରଧନକୁ ଆତ୍ମସାତ୍ ନ କରିବେ···ସେ ଟଙ୍କା ବାଣ୍ଟି ଭୋଟ୍ କିଣି ଚୌକିରେ ବସିବେ କିପରି ?

ଶ୍ରୀମତୀ ଗାନ୍ଧୀ ବ୍ୟାଙ୍କ୍ ଜାତୀୟକରଣ ରଜାଙ୍କ ହାତପାଣ୍ଠି ଉଚ୍ଛେଦ, ଏଇ ଭଳି କେତୋଟି କାମକୁ "ଗରିବି ହଟାଓ" ଧ୍ୱନି ଦେଇ ଲୋକମତକୁ ଯେପରି ନିଜ ମୋହିନୀ ମନ୍ତ୍ରରେ ଅକ୍ତିଆର କରିଥିଲେ, ତାହା କେତେଦିନ ରହିଲା ?

ଓଲଟା ୧୯୬୯ କଂଗ୍ରେସ୍ ବିଭାଜନରେ ଯାହାଙ୍କୁ ସିଏ ପ୍ରତିକ୍ରିୟାଶୀଳ ବୋଲି ଘୋଷଣା ଦେଇଥିଲେ ସେଇମାନେ ଆଜି କ୍ଷମତାକୁ ଫେରି ଆସିଛନ୍ତି ।

ଜନମତକୁ କେହି ସବୁଦିନେ ପ୍ରବଞ୍ଚିତ କରି ରଖିପାରେନା । ଜୟପ୍ରକାଶ ତ ନିଜେ ମାନୁଛନ୍ତି ଯେ ସିଏ ସର୍ଦ୍ଦାର ପଟେଲଙ୍କୁ ଭୁଲ୍ ବୁଝିଥିଲେ । ବ୍ରିଟେନ୍‌ର ପ୍ରଧାନମନ୍ତ୍ରୀ ହେରଲ୍ଡ ମେକ୍‌ମିଲନ୍···ଏବେ ଯେଉଁ Past Masters ବୋଲି ବହିଖଣ୍ଡିକ ଲେଖିଛନ୍ତି ସେଥିରେ ଚର୍ଚ୍ଚିଲ୍ ଓ ଲର୍ଡ଼ କର୍ଜନଙ୍କର ଉତ୍‌ଥାନ ଓ ପତନର ଯେଉଁ କାହାଣୀ··· ତାହାହିଁ ତ ଇତିହାସର ଶିକ୍ଷା । ଯିଏକୁ ଯିଏ ସାବଧାନ ନ ହୋଇ ତକିଆରେ ବସିଛି ବୋଲି···ତୋତେ-ମୋତେ ପାଉଁର-ଅନ୍ତର କରି ନ୍ୟାୟ ଅନ୍ୟାୟ ମାନୁନି ନାହିଁ···ତାଙ୍କର ସେ ତକିଆ କେତେଦିନ ରହିବ ? ଆଖିଆଗ ଘଟଣା ଆଉ ଆଙ୍ଗୁଠି ଦେଖାଇ ଦେବା ଅନାବଶ୍ୟକ । ସେଦିନ ଦିଲ୍ଲୀ ପାରେ ଜନତା ଦଳର ନେତା

ଶ୍ରୀ ପିଲୁ ମୋଦୀ "ନାଗା ଟୋଟାଲ୍‌କ୍ ବନ୍ଧ ଖଣ୍ଡିଏ ଉଦ୍‌ଘାଟନ କରି ଜନତା ଦଳକୁ ଚେତାଇ ଦେଉଛନ୍ତି ଯେ ଲୋକଙ୍କ ହାତକୁ କ୍ଷମତା ଯଥାଶୀଘ୍ର ବଢାଇ ଦିଅ ।

ଏହି ସନ୍ଧିଲଗ୍ନରେ ଆମର ଏଠି ଯିଏ ନିଜ ହାତମୁଠାରେ ସବୁ କ୍ଷମତାକୁ ରଖି ସାରା ସମାଜକୁ ତଥା ସମ୍ବାଦପତ୍ରକୁ ଅଯୁତ କରିବାକୁ ବସିଛନ୍ତି ସେମାନେ ଅନ୍ତତଃ ଦିଲ୍ଲୀର ସାମ୍ବାଦିକ ଗୋଷ୍ଠୀର ଏହି ବନ୍ଧ ଖଣ୍ଡିକୁ ନଜର ଦେଲେ ଜୟପ୍ରକାଶଙ୍କ ଜନ ସହଯୋଗ ଓ ଜନ ସମବାୟ ମର୍ମକୁ ଠଉରାଇ ପାରିବେ ।

ପ୍ରଧାନମନ୍ତ୍ରୀ ମୋରାରଜୀ କ'ଣ ଭୁଟ୍ଟୋଙ୍କୁ ଆଗେ ବିରୋଧୀକୁ ମଙ୍ଗାଇ··· ନିଜ କାମ କରାଇ ନେଉଛନ୍ତି ? ଫରକ୍କା ଜଳ ବିବାଦ ଆଜିପର୍ଯ୍ୟନ୍ତ ଗଡ଼ିଗ-ଗଡ଼ିରୁ ହେଉଥିଲା କାହିଁକି । ବିଷୁପତିଙ୍କଠାରୁ ବାଟେସ୍ତିଙ୍କ ଯାଏଁ କିପରି "କନ୍‌ଫେଣ୍ଟେସନ୍" ବିନା "କନ୍‌ସେନସସ୍"ରେ ନିର୍ବାଚିତ ହୋଇଗଲେ ?

ରୁଷିଆ ଓ ଆମେରିକାଙ୍କ ଭିତରେ ସମାନ ବନ୍ଧୁତା ରଖି କିପରି ବୈଦେଶିକ ବ୍ୟପାର ଚାଲିଛି ?

ଆଉ ଆମର ଏଠି, ରାଜଧାନୀରେ ମନ୍ତ୍ରୀ ତାଙ୍କ ଦଳୀୟ କ୍ଷମତା ଧରିବା ପ୍ରଥମ ପ୍ରଶ୍ନ ହେଲା---ତୁମେ ମୋର ନା ଆଉ କାହାର ?

ବ୍ୟକ୍ତି ଭକ୍ତିର ଏ ପ୍ରଯୋଗ ଇନ୍ଦିରାଗାନ୍ଧୀଙ୍କ ଅମଳରେ ଏତେ ଉତ୍କଟ ହୋଇ ଉଠିଲା ଯେ ବର୍ତ୍ତମାନ ସୁସ୍ଥ ମତ ନିଷ୍ଠାକୁ ଫେରି ଆସିବା ଆଉ ସହଜ ହେଉନି । ପରସ୍ପରର ବିଶ୍ୱାସ ଏମିତି ବୁଡ଼ି ଯାଉଛି ଯେ ଆମର ଏଠି ଆଉ "ଟ୍ରେଷ୍ଟିସିପ୍" ବା "ନ୍ୟାୟଧର୍ମ" ସହଜରେ ଫେରିବାର ସମ୍ଭାବନା ନାହିଁ ।

ନିଜେ ଆଇଁଷ ନଖାଇବ ବୋଲି ଆଇଁଷ ଖିଆଙ୍କ ସାଙ୍ଗରେ ଏକାଧାଡ଼ିରେ ବସିବ ବି ନାହିଁ ?

ଜଗନ୍ନାଥ-କ୍ଷେତ୍ରରେ ଏ ଛୁଆଁ-ଅଛୁଆଁ ଭେଦ ଆମ ଶାସନକର୍ତ୍ତା ଓ ସମାଜନେତାଙ୍କୁ ଏମିତି ଲୋକହସା କରୁଛି ଯେ, ଏଠୁ ଯେତେ ଯାହା ଦାବୀ

ବା ପ୍ରସ୍ତାବ ଗଲେ ବି···ଜନତାର ତୁଙ୍ଗ କର୍ତ୍ତୃପକ୍ଷ ସବୁଥିରେ ବ୍ୟକ୍ତିଗତ ଦ୍ୱେଷର ଗନ୍ଧ ବାରି ଯାଉଛନ୍ତି ।

ଅପର ପକ୍ଷରେ ସେମିତି ଆମର ଏଠୁ ଯେତେ ଯାହା କଳ କାରଖାନା ଠିକ୍ସା ଲଗାଣର ଦାବୀ ହେଉଛି ତାକୁ ଦିଲ୍ଲୀ କର୍ମକର୍ତ୍ତାମାନେ ତାଙ୍କର **"ମୁକ୍ତ-ସମାଜ"** ବ୍ୟକ୍ତି-ବିକାଶ ଆଦର୍ଶରେ···କୃଷି ଓ କୁଟୀର ଶିଳ୍ପର ମହତ୍ତ୍ୱ ବିପ୍ଳବକୁ ଆମ ଏଠା ନେତୃତ୍ୱ ଯେ ବୁଝି ଯାଆନ୍ତି, ଏ କଥା ଲଜ୍ୟାକର ହେଉଛି ।

ତଥାପି ଆମେ ନିଦ୍ଦା ମାଧୁଆ ମାର ସେ ପୌଢ଼ି ଭଳିଆ କବାଟକିଳି ଗାଁ ଯାକକୁ ଗାଳିଦେବୁ ତା'ତ ହେବ ଅକ୍ଷମର ଆତ୍ମ-ସନ୍ତୋଷ ।



# ଇତିହାସ, କଥାକୁହ !

ଗଡ୍‌ସେଙ୍କ ଗୁଳିରେ ଗାନ୍ଧିଜୀ ଢଳି ପଡ଼ିଥିଲେ ୩୦ ଜାନୁୟାରୀ ୧୯୪୮ ରେ ।

ସେହି ଘଟଣାର ୧୮ ଦିନ ଆଗରୁ, ଜାନୁୟାରୀ ୧୨ ତାରିଖ ୧୯୪୮ ଦିନ ଗାନ୍ଧିଜୀ ଆରମ୍ଭ କରିଥିଲେ ତାଙ୍କର ଅନନ୍ତ ଉପବାସ ।

ଏଇ ଉପବାସର ମୁଖ୍ୟ ଉଦ୍ଦେଶ୍ୟ ଥିଲା—ବିଭାଜନ ବେଳର ନଗଦ ପାଣ୍ଠିରୁ ୫୫ କୋଟି ଟଙ୍କା ପାକିସ୍ତାନକୁ ଦେଇଦେବା ଲାଗି…କିନ୍ତୁ ନେହେରୁ ପଟେଲ ଙ୍କ ନାସ୍ତି ବାଣୀ ।

ସେହି ଦିନ ପ୍ରାର୍ଥନା ସଭାରେ ଗାନ୍ଧିଜୀ ଘୋଷଣା କରିଥିଲେ—ମୁଁ ଏଇ ଅନଶନ ଭଂଗ କରିବି, ଯେଉଁଦିନ ହିନ୍ଦୁ ଓ ମୁସଲମାନଙ୍କ ଭିତରେ… ବିନା ବାହାରର ଚାପରେ…ହୃଦୟର ପୁନର୍ମିଳନ ହେବ—ଜାଗ୍ରତ କର୍ତ୍ତବ୍ୟବୋଧରେ ।

୧୨ ତାରିଖ ଜାନୁୟାରୀ ପ୍ରାର୍ଥନା ସଭା ଆଗରୁ ଗାନ୍ଧିଜୀ ବଡ଼ଲାଟ ଭବନରେ ମାଉଣ୍ଟବେଟନ୍ ଙ୍କୁ ଭେଟି ଏହି ୫୫ କୋଟି ଟଙ୍କା ଦେଇଦେବା ସମ୍ପର୍କରେ ବଡ଼ଲାଟଙ୍କ ମତ କଣ ବୋଲି ସିଧାସଳଖ ପଚାରି ଦେଇଥିଲେ ।

ଲର୍ଡ଼ ମାଉଣ୍ଟବେଟନ୍ ଗାନ୍ଧିଜୀଙ୍କୁ କହିଦେଇଥିଲେ ଯେ ତାଙ୍କ ମତରେ ପାକିସ୍ତାନ କୁ ଏ ୫୫ କୋଟି ଟଙ୍କା ନଦେବା…ନେହେରୁ ଓ ପଟେଲଙ୍କ ପକ୍ଷରେ Unstatesman like ଓ Unwise·



ଏଇ ଘଟଣାକୁ ୨୯ ଜାନୁୟାରୀ ୧୯୭୮ ସଣ୍ଡେ ଷ୍ଟାଣ୍ଡାର୍ଡରେ ଶ୍ରୀ ଏନ୍. ବିଶ୍ୱନାଥ ଆଙ୍ଗୁଠି ଦେଖାଇ ଦେଇଛନ୍ତି ।

ସେମିତି ସେଇ ଦିନର ସଣ୍ଡେ ଷ୍ଟାଣ୍ଡାର୍ଡରେ ମହାତ୍ମା ଗାନ୍ଧୀ ନାମକ ଏକ ରଚନାରେ—ରଚୟିତା ଭବାନୀ ଭଟ୍ଟାଚାର୍ଯ୍ୟ...ଗାନ୍ଧିଜୀ ଓ ରୋମାଁ ରୋଲାଙ୍କ ଏକ ଘଟଣାକୁ ଉଦ୍ଧାର କରି ଦେଖାଇଦେଇଛନ୍ତି, ଯେ ଗାନ୍ଧିଜୀ ଯେତେବେଳେ କହିଲେ ଯେ ସତ୍ୟ ହିଁ ତାଙ୍କ ପକ୍ଷରେ ଈଶ୍ବର ଠିକ୍ ସେତିକିବେଳେ ରୋମାଁ ରୋଲା ପଚାରିଦେଲେ—'ତେବେ ଆନନ୍ଦ ?'

ଗାନ୍ଧିଜୀ ଭାରତକୁ ସତ୍ ଓ ଚିତ୍‌ର ପ୍ରେରଣା ଦେଇ ଯାଇଛନ୍ତି । ସତ୍ୟକୁ ବ୍ରତ କରି ନିଜ ଚେତସ କର୍ମରେ ସତ୍ୟର ମର୍ଯ୍ୟାଦାକୁ ଶିଖାଇ ଦେଇ ଯାଇଛନ୍ତି । ମାତ୍ର ରୋଲାଙ୍କ ସେ ପ୍ରଶ୍ନ—ସତ୍ ଓ ଚିତ୍ ପରେ ଆନନ୍ଦର ଯେଉଁ ସ୍ବପ୍ନ...ଭାରତ ଆତ୍ମାର ଯେଉଁ ସଚ୍ଚିଦାନନ୍ଦ ବିଗ୍ରହ ? ତାକୁ ସିନା ଜନ୍ମ ପ୍ରକାଶ ଦେଖାଇଗଲେ କିନ୍ତୁ 'ଶିଷ୍ୟାତ୍ ପରାଜୟ ମନ୍ତ୍ର' ସିଦ୍ଧି କିଏ ହେବ ?—ଗାନ୍ଧିଜୀଙ୍କୁ ବାପୁଜୀ ବୋଲି ଡାକୁଥିଲେ ତାକୁ ଗାନ୍ଧିଜୀ ୧୩.୭.୧୯୩୩ରେ ଖଣ୍ଡିଏ ଚିଠିରେ ଏହି ମନ୍ତ୍ର ବତାଇ ଯାଇଛନ୍ତି ମୀରାବେହେନ୍ କୁ ।

ସେହି ଜାନୁୟାରୀ ୩୦ ତାରିଖ ସନ୍ଧ୍ୟାରେ କଟକ ଆକାଶବାଣୀରୁ ଶ୍ରୀ ନିତ୍ୟାନନ୍ଦ କାନୁନ୍‌ଗୋ ଓ ଶ୍ରୀମତୀ ମାଳତୀ ଚୌଧୁରୀଙ୍କ ଯେଉଁ ସ୍ମୃତିଚାରଣ ?

ଗାନ୍ଧିଜୀ କେମିତି ଶ୍ରୀ କାନୁନ୍‌ଗୋଙ୍କ ମନ ଜାଣି ସେଠାରେ ପହଞ୍ଚିବା ପୂର୍ବରୁ ଗିଲ୍ଲସେ ଆଖୁରସ ସଜାଡ଼ି ରଖିଥିଲେ ।

ନୂଆଖାଲିରେ ଗାନ୍ଧିଜୀଙ୍କ ରହିବା ଲାଗି ମୁସଲମାନଙ୍କ ଘରେ ବନ୍ଦୋବସ୍ତ କରି କହିଲାବେଳକୁ—ମାଳତୀ ଦେବୀଙ୍କୁ ଗାନ୍ଧିଜୀ କେମିତି ପଚାରି ଦେଲେ—ମୁସଲମାନଙ୍କ ଘରେ ମୋର ରାମଧୂନ୍ ଭଜନ ହେବ ବୋଲି ସମ୍ମତି ନେଇଛ ତ ?

*　　　*　　　*　　　*　　　*

ପୁଣି ଚଳିତ ୭୮ ରେ ଗାନ୍ଧିଜୀଙ୍କ ୩୦ ତମ ଶ୍ରାଦ୍ଧର ତିନିଦିନ ପୂର୍ବରୁ ହାଇଦ୍ରାବାଦ ଠାରେ ୨୭ ଜାନୁୟାରୀରେ ହେଲ୍‌ଡେଲ୍ ବର୍ଗ ବିଶ୍ବବିଦ୍ୟାଳୟର ଡକ୍ଟର ହର୍ମେନ୍ କୁଲ୍‌କେ ଆମରି ପୁରୀ ଜଗନ୍ନାଥ ମନ୍ଦିର ଇତିହାସ କୁ ଯେପରି ଅଳତା ପିନ୍ଧାଇ ସଧବା କରିଦେଲେ !

ମୁସଲମାନ ସମ୍ରାଟମାନେ ପ୍ରାୟତଃ ତାଙ୍କ ଶାସନ କ୍ଷମତାର ସ୍ଥାୟିତ୍ୱ ଲାଗି ସ୍ଥାନୀୟ ଧର୍ମାଧୀଶଙ୍କ ସଙ୍ଗେ ଗୋଟାଏ ସନ୍ଧି ସାଲିସ୍ କରିନେଉଥିଲେ— ସେହି ଇତିହାସର ଆଲୋଚନା କରି ଡକ୍ଟର କୁଲ୍‌କେ କହିଲେ ଯେ—ସମ୍ରାଟ ଆକବର ଖୋର୍ଦ୍ଧା ରାଜା ରାମଚନ୍ଦ୍ରଙ୍କ ସଙ୍ଗେ ଯାତ୍ରୀ କେନ୍ଦ୍ର ପୁରୀକୁ ନିଜ ଉଦ୍ଦେଶ୍ୟରେ ଯେପରି ପ୍ରୟୋଗ କରିଥିଲେ ତାର ସ୍ପଷ୍ଟ ପ୍ରମାଣ ରହିଛି ।

ଡକ୍ଟର କୁଲ୍‌କେଙ୍କ ଏ ଭାଷଣର ଆୟୋଜନ ହୋଇଥିଲା ମ୍ୟାକ୍‌ସମୁଲର ଭବନ, ଉସ୍‌ମାନିଆ ବିଶ୍ୱ ବିଦ୍ୟାଳୟ ଓ ଜର୍ମାନ-ଭାରତ ବିଦ୍ୟାକେନ୍ଦ୍ରର ମିଳିତ ସହଯୋଗ କ୍ରମେ ।

ପ୍ରାୟ ଏକା ସମୟରେ ଏଇ ଜାନୁୟାରୀ ୨୮ ତାରିଖ (୧୯୭୮) ଦିନ ଏପାଖ କଲିକତାରେ ନିଖିଳ ଭାରତ କଷ୍ଟ୍ କନ୍‌ଫରେନ୍‌ସରେ ଭାରତର ଶିକ୍ଷା ଓ ସଂସ୍କୃତି ମନ୍ତ୍ରୀ ଡ଼ଃ ପ୍ରତାପ ଚନ୍ଦ୍ର···ଘରୋଇ ଓ ସରକାରୀ ଦୁଇଧାରାର ଭାରସାମ୍ୟ ରକ୍ଷା କରିବାକୁ ଜନତା ଶାସନରେ ଯେଉଁ ସମନ୍ୱୟ—ସନ୍ଧାନ ଚାଲିଛି ଏବଂ ସେଥିରୁ ସମବାୟ ବୋଲି ଯେଉଁ ତୃତୀୟ ସୂତ୍ର ମଧ୍ୟ ଉଦ୍‌ଭାବିତ ହେଉଛି ଯେ ମାତ୍ର ନ୍ୟାୟକୁ ଦେଖାଇ ଦେଇ ସେହି ସମ୍ମିଳନୀର ମୁଖ୍ୟବକ୍ତା ମାର୍କସପନ୍ଥୀ ଜ୍ୟୋତି ବସୁଙ୍କ ଯୁକ୍ତିକୁ—ଯେଉଁ, ସେଗୁଡ଼ିକ ଖଣ୍ଡନ କଲେ ।

ପୁଣି ୨୮ ତାରିଖ ଦିନ ଭାରତର ବାଣିଜ୍ୟମନ୍ତ୍ରୀ ଶ୍ରୀ ମୋହନ ଧାରିଆ ଖାଉଟିଙ୍କ ଅଧିକାର ସାବ୍ୟସ୍ତ କରିବାକୁ ଜାତୀୟ ସ୍ତରରେ ଯେଉଁ ସଂଗଠନର ପ୍ରଚେଷ୍ଟା ଚାଲିଛି ବୋଲି ଯେଉଁ ସୂଚନା ଦେଲେ ?

ଅଥଚ ଯେଉଁଦିନ ଶ୍ରୀଲଙ୍କାର ପ୍ରଧାନମ[redacted]ବର୍ଦ୍ଧନ ତାଙ୍କ ପୂର୍ବବର୍ତ୍ତୀ ଶିରିମାଭୋ ବନ୍ଦର ନାୟକଙ୍କ ଶାସନର 'ଅପ[redacted]ବହାର' ସମ୍ପର୍କରେ ଯେଉଁ ତଦନ୍ତ କମିସନ୍ ବସାଇଲେ ?

ଏବଂ ଦିଲ୍ଲୀ ଗୁପ୍ତ ଇଜଲାସ୍‌ଙ୍କ ସେହି ଦିନ ସଞ୍ଜୟଙ୍କ ଦସ୍ତଖତ ପ୍ରତ୍ୟେକଟି ପରସ୍ପର ଅମେଳ ବୋଲି ଯାହା କୁହାଗଲା ?

କିମ୍ବା 'ଆଧୁନିକ ସାହିତ୍ୟରେ ଅନ୍ତସାଣତା' ଶୀର୍ଷକ ଯେଉଁ ପ୍ରବନ୍ଧଟି ଅଖିଳ ଭାରତୀୟ ଇଂରାଜୀ ଶିକ୍ଷକ ସମ୍ମିଳନୀର ସଭାପତି ରୂପେ ଆମର ଶିକ୍ଷା

ଡିରେକ୍ଟର ଶ୍ରୀ ବଧୂଭୂଷଣ ଦାସ ୧୯୭୨ରେ ତାମିଲ୍‌ନାଡୁରେ ପଢ଼ିଥିଲେ ଏବଂ ସେଥିରେ ବର୍ଣ୍ଣିତ କଲ୍‌ଚରର ଯେଉଁ ଲାଇଫ୍‌ଆସର୍‌ସନ୍‌କୁ ଦେଖାଇ ଦେଇଥିଲେ ? (ଦ୍ରଷ୍ଟା ! ୧୯୭୭ ପ୍ରକାଶକ—ଅଗ୍ରଦୂତ, ବାଙ୍କାବଜାର : କଟକ-୨)

ନଟେରତ୍ନ ଆମର ଛଉଦାସ ଚମ୍ପୁପଥୀଙ୍କ ଯେଉଁ ସର୍ବସ୍ୱକାଶୀ ଅନ୍ତଃନିଷ୍ଠାକୁ ଫିଙ୍ଗାଇଛନ୍ତି—ଆପଣାମାନଙ୍କୁ ଆପେଦେଖିବ, ଗୁରୁମିନା ବାଟ ବତାଇଦେବ—ତୁ ତତେ ଖୋଜି କର ସ୍ଥାନ···ଗୁପତ ହୋଇ ରହିଛି ମନ୍ଦିରେ ତୋହର ।'

● ● ●

ଗାନ୍ଧୀଙ୍କ ୩୦ତମ ଶ୍ରାଦ୍ଧବାସରେ ଉତ୍ତର ପୁରୁଷଙ୍କ ଧ୍ୟାନ ଓ ଅଧ୍ୟୟନ ଲାଗି ମୋର ଏତକ ଚୁମ୍ବକ-ଇଙ୍ଗିତ ! କେବଳ, କେଉଁଠିକା କେତୋଟି ଘଟଣା ସଙ୍ଗେ···ଏବର ଏମିତିକା କେଇଟି ଘଟଣାକୁ ଯୋଡ଼ି ଦେଖାଇବାର ଯେଉଁ ପ୍ରୟୋଜନ ତାହାର ଅପ୍ରୟୋଜନ ନହେବାରୁ ତ ଆମର କଟକ ଆକାଶବାଣୀରୁ ଜାନୁୟାରୀ ୨୯ ତାରିଖ ରବିବାର ରାତିରେ ପ୍ରସାରିତ ସେ ପ୍ରାଣସ୍ପର୍ଶୀ ଗୀତ ଦୁଇଟି :

ଆଖି ଆଗରେ ଅନେକ ମୁହଁ
ମନ ପରଦାରେ···କାହାର କହ
ଓ
ଅନ୍ଧାର ତଳେରେ ଖୋଜନ୍ତୁ କିଏ
ଆଲୋକର ରାଜପଥ !

ବାର୍ତ୍ତାମନ୍ତ୍ରୀ ଆଡ୍‌ଭାଣୀଙ୍କ ଭାଷାରେ···କଲମ ଠେଲା···ସାଥୀ ରଘୁନାଥ ଶାସ୍ତ୍ରୀଙ୍କ ଗାନ୍ଧୀଶ୍ରାଦ୍ଧ ଦିବସରେ···ଆମର କଟକ ଆକାଶବାଣୀରୁ—'ସର୍ବେଭବନ୍ତୁ ସୁଖୀନଃ···ଯେଉଁପ୍ରାର୍ଥନା ତାର ଖିଅଧର—'ସର୍ବେ ଭଦ୍ରାଣୀ ପଶ୍ୟନ୍ତୁ' ବୋଲି ମୋର ଏତକ କାମ୍ନ ଖିଅ ।

ମୁଁ ସଂସ୍କାରରେ···ସମ୍ପୂର୍ଣ୍ଣ ସଚେତନତାରେ ଏହି କାଳଭଙ୍ଗ ଓ ସ୍ଥାନ ଭଙ୍ଗ ଘଟାଇଛି ।

ମାର୍କସ-ଦର୍ଶନର ମୂଳମନ୍ତ୍ର ପଣ୍—ପୁରାତନରେ ନୂତନର ଆବିଷ୍କରଣ ?

ଧର୍ମଧାରଣା ବା ସମାଜ ବିଜ୍ଞାନ– ଭାଷା ଓ ସାହିତ୍ୟର ପରିପ୍ରକାଶ ହେଲେବି ମନସ୍ତତ୍ତ୍ୱରେ ତ ଆମେ ସମକାଳୀନ !

ଏହା ଯଦି ଗ୍ରାମ୍ୟହୁଏ···ସ୍ଥାନ, କାଳ ଓ ପାତ୍ରର ଏ ଭଙ୍ଗୀରେ— ମହାଭାରତ ଅଶୁଦ୍ଧ ହୋଇଯିବ ନାହିଁ ।



# ଆମେ ଏଇଥିଲାଗି ବଞ୍ଚିଛେ !

ଏ ଉଚ୍ଚାରଣ ପଦକ ଖୋଦ୍ ଗାନ୍ଧୀଙ୍କ ଭୁଣ୍ଡରୁ । ଆମର ବାଣପୁର ଡାକ ବଙ୍ଗଳାରେ—ପଚାଶ ବର୍ଷ ତଳେ । ଗାନ୍ଧୀଜୀ ଆସିଥିଲେ ଗୋଦାବରୀଶଙ୍କ ଆମନ୍ତ୍ରଣରେ । ଉକ୍ତମପରେ ଆହାନ୍ତ ହେଲେ । ଡାକ୍ତର ଜଗିବସିଲେ । କବାଟ କଳି ସଭାରୁ ଅଟକ କଲେ ।

ବ୍ୟର୍ଥମନୋରଥ ହୋଇ ଗୋଦାବରୀଶ ମୁହଁ ଶୁଖାଇ ବଙ୍ଗଳା ପଡ଼ିଆରେ ବୁଲୁଥାନ୍ତି । ଗାନ୍ଧୀଜୀ ଝରକା ବାଟେ ଦେଖି ଡାକଲେ । ବୁଝିଲେ ସେ ସଭାକୁ ଆସୁଥିବା ଲୋକଙ୍କୁ ପୁଲିସ୍ ଗିରଫ କରୁଛି । ସଙ୍ଗେ ସଙ୍ଗେ କବାଟକୁ ଧକ୍କାଟାଏ ମାରିଦେଇ, ଡାକ୍ତରଙ୍କୁ ଠେଲିଦେଇ କଂଗ୍ରେସୀ ଭକ୍ତଙ୍କ ବାରଣ ପିଠକୁ ଡେଇଁ ପଡ଼ ମାଇଲିଏ ବାଟ ଖରାରେ ଧାଇଁଲେ । ପଛେ ପଛେ ଗୋଦାବରୀଶ ମିଶ୍ର ଓ ଆମ ପରି କେଇ ଜଣ ସ୍ୱେଚ୍ଛାସେବକ ଦୌଡ଼ୁଥାନ୍ତି । ଗାଁ ମଝିରେ ବେଦୀଟିଏ ହୋଇଥାଏ ସଭାଲାଗି । ମଣଷଟିଏ ମଧ୍ୟ ନେଇ ବଙ୍ଗଳା ପାଖରେ ପଡ଼ି ରହିଥାଏ । ଖରାରେ ଦୌଡ଼ି ଦୌଡ଼ି ବେଦୀ ଉପରେ ଚଢ଼ିଯାଇ କ'ଣ କେଇପଦ କହିଦେଇ ଯେଉଁଠି ଗାନ୍ଧୀଜୀ ପଡ଼ିଗଲେ ଅଚେତ ହୋଇ । ଷ୍ଟ୍ରେଚରରେ ବଙ୍ଗଳାକୁ ଆଣି ଡାକ୍ତର ମନେ ଚେତା କଲ ପରେ ଗାନ୍ଧୀଜୀଙ୍କର ଅମାନିଆ କଥାକୁ ଦୋଷ ଦେଲେ ; ଯେତିକ ବେଳେ ଗାନ୍ଧୀଜୀ ଡାକ୍ତରଙ୍କୁ କହିଦେଲେ—

'Dr. I we live for this.'

ସେ ଜୀବନ ପଣ ଥିଲା ବୋଲିତ ୭୮ ବର୍ଷ ବୟସରେ ଗୁଳିରେ ମଲେ ! ଗାନ୍ଧୀଜୀ କ'ଣ ଆମ ତୁମ ଭଳି ବେମାରୀ ପଡ଼ି ମରିଥାନ୍ତେ କି ?

ଜୀବନ ତ ଗୋଟିଏ ନିର୍ଦ୍ଦିଷ୍ଟ ଉଦ୍ଦେଶ୍ୟରେ !

ଏବେ ସିଏ ସରକାରୀ ଆସନରେ ରହି ମରୁଛନ୍ତି ତାଙ୍କ ଲାଗି ଯେଉଁ ସରକାରୀ ପତାକା ଅଧା ହେଉଛି ? ଗାନ୍ଧିଜୀଙ୍କ ଶବ ବୁହା ହେଲା ବନ୍ଧୁକ ଗାଡ଼ିରେ । ସିଏ ଅହିଂସାର ପୂଜକ ତାଙ୍କର ଶବ ଶୋଭାଯାତ୍ରାରେ ଆମେ ଦେଖାଇଲୁ ତୋପ ବନ୍ଧୁକ ।

ଗାନ୍ଧିଜୀ କ'ଣ ସ୍ୱାଧୀନତା ପରେ ଚୁପ୍ଚାପ୍ କହି ଯାଇଥିଲେ କଂଗ୍ରେସକୁ ଭାଙ୍ଗି ଦିଅ । ଗାନ୍ଧି ଦର୍ଶନକୁ ଆମେ କେତେ ଦୂର ମାନିଛୁ ? ଅଥଚ ତାଙ୍କରି ନାଁ ଧରି କ୍ଷମତାରେ ବସିଛୁ ।

●　　●　　●

ଦେଶ ବର୍ଷ ତଳର ଏ ସ୍ମୃତି ସ୍ମରଣ ଆଜି ଅବାନ୍ତର ନୁହେଁ । ଆମ ମୁଖ୍ୟ ମନ୍ତ୍ରୀ ଓ ରାଜ୍ୟ ଜନତା ସଭାପତି ଯାଇଥିଲେ ପାଟଣାରେ ଜୟପ୍ରକାଶଙ୍କୁ ଦେଖିବାକୁ ।

ଜୟପ୍ରକାଶଙ୍କୁ ବନ୍ଦୀକରି...ଜରୁରୀ ଶାସନ ବଳରେ ଶ୍ରୀମତୀ ଗାନ୍ଧୀ ଲୋକଙ୍କ ମୁହଁ ବନ୍ଦ କଲେ ସିନା...ଆଜି ସିଏ ସେଥିର ହେଉ ଅଧର୍ମର ଫଳ ଭୋଗ କରୁଛନ୍ତି ତାହା ତାଙ୍କ ମନ ଜାଣୁଥିବ । ସେଇ ଶ୍ଳୋକଟି—

'ଅଧର୍ମ ବିତ୍ତ ବଢ଼େ ବହୁତ
ଗଲାବେଳେ ଯାଏ ମୂଳ ସହିତ ।

ଇନ୍ଦିରାଙ୍କ ସାଥି ମନ୍ତ୍ରୀମାନେ ଆଜି କି ସାକ୍ଷ୍ୟ ଦେଉଛନ୍ତି—ଶାହା କମିଶନ୍ ଆଗରେ !

ବ୍ରିଟେନର ଶ୍ରମିକ ଦଳର ପ୍ରଧାନ ମନ୍ତ୍ରୀ କ'ଣ ଭୁଲରେ ପାର୍ଲମେଣ୍ଟ ସଦସ୍ୟଙ୍କ ସଭାରେ କହିଦେଲେ ନିର୍ବାଚନ ତ କରାଇଥିଲେ ପ୍ରାକ୍ତନ ପ୍ରଧାନ ମନ୍ତ୍ରୀ । ନିର୍ବାଚନ ନ କରାଇଥିଲେ ହୁଏତ ଶ୍ରୀମତୀ ଗାନ୍ଧୀ ଆଉ କେଇ ମାସ ଠାକି ଯାଇଥାନ୍ତେ କିନ୍ତୁ ବାହାର ଜନମତରେ ଯେଉଁ ଚୁପ । ଘର ଭିତରେ ସିନା ମୁଖ ବନ୍ଦ ହେଲା, ବିଦେଶୀ ସମ୍ବାଦ ପତ୍ର ମାନଙ୍କରେ ଯେଉଁ ଅପନିନ୍ଦା ବାହାରିଲା ।

ସେମିତି ନନ୍ଦିନୀ ଦେବୀ କେଇ ଲକ୍ଷ ଟଙ୍କା ଖର୍ଚ୍ଚ କରି କମ୍ୟୁନିଷ୍ଟଙ୍କ ମୁହଁରେ—ଆମରି ବାରବାଟି ଷ୍ଟାଡ଼ିୟମ୍‌ରେ ଓଡ଼ିଶାର ଜନମତକୁ ଫାସିଷ୍ଟ

ବୋଲି ପ୍ରଚାର କଲେ ନାହିଁ କି ? ଶେଷରେ ତ ସେଇ କମ୍ୟୁନିଷ୍ଟ ଦଳ ନିଜ କାନ ନିଜେ ମୋଡ଼ି ଇନ୍ଦିରା ଗୋଷ୍ଠୀ ଛାଡ଼ିଛନ୍ତି । ସେମିତି କ'ଣ ବଂଶୀଲାଲ୍ ଧାବନ୍ ଓ ଉର୍ସଙ୍କୁ ବଞ୍ଚାଇବାକୁ ଶ୍ରୀମତୀ ଗାନ୍ଧୀ ନିଜର ଗୋଟାଏ ଦଳ ଗଢ଼ି ନାହାନ୍ତି କି ? କିଏ କହିବ ଯେ ଏଇ ଯେଉଁ ହଜାରେ ଟଙ୍କିଆ ନୋଟ୍ ଅଚଳ ହେଲା—ଇନ୍ଦିରାଙ୍କ ଗୁପ୍ତଧନକୁ ଅଚଳ କରିବାକୁ ଉଦ୍ଦିଷ୍ଟ ନୁହେଁ ବୋଲି । ଇନ୍ଦିରା ତ ଏମିତି ଗରିବୀ ହଟାଇବାକୁ ପ୍ରଚାର ଚଳାଇ କୋଟି କୋଟି ଟଙ୍କା ଆହରଣ କରି ନିଜ ପୁଅକୁ ଗାଦିରେ ବସାଇବେ ବୋଲି ଆୟୋଜନ କରୁଥିଲେ ।

ଜୟପ୍ରକାଶ ଜେଲ୍ ରେ ରହି ତାଙ୍କ କିଡ୍ନି ଖରାପ ହୋଇଗଲା । ସେ ସଂସାରରେ ତଦନ୍ତ ଚାଲିଲେ ବି ଜୟପ୍ରକାଶଙ୍କ ମନବଳ ଫେରୁଛି କି ? ତାଙ୍କ ସମ୍ପୂର୍ଣ୍ଣ କ୍ରାନ୍ତି ଆଜିକୁ କେତେ ଗତି କିଏ କରୁଛି ? ଜୟପ୍ରକାଶଙ୍କ ଅମୃତବାଣୀ ବୋଲି ଏ ଚାନ୍ଦା ସଂଗ୍ରହ କରୁଛନ୍ତି—ସେମାନେ ଯଦି ଜୟପ୍ରକାଶଙ୍କ ଈପ୍ସିତ ଗଣ ଚେତନାକୁ ଜାଗ୍ରତ କରନ୍ତେ ତେବେ ଧନଠାରୁ ମନରେ ତାଙ୍କ ସ୍ୱାସ୍ଥ୍ୟ ପୁଣି ଫେରି ଆସନ୍ତା । ଗାନ୍ଧିଜୀ ସ୍ୱାଧୀନତା ପରେ କଂଗ୍ରେସର ଗତି ଓ ପ୍ରକୃତିକୁ ଦେଖି ଭାଙ୍ଗି ପଡ଼ିଥିଲେ । ମରିଗଲେ ନାହିଁ ଯେ ତରିଗଲେ ।

ଜୟପ୍ରକାଶ ସବୁ ଦେଖୁଛନ୍ତି । କିନ୍ତୁ ନିଜେ ଯେଉଁ ଜନତା ସରକାରଙ୍କୁ ଆଣିଛନ୍ତି ନିଜେ କ'ଣ ତାର ବିରୋଧ କରିବେ ? ତଥାପି ମୋରାରଜୀଙ୍କୁ ଯେ ପ୍ରଧାନମନ୍ତ୍ରୀ କରି ଯାଇଛନ୍ତି ଏତିକି ତାଙ୍କର ସନ୍ତୋଷ । ଦେଖିଲେ ତ ଏରୋପ୍ଲେନ ଖସି ତିନି ଜଣ ପାଇଲେଟ୍ ମରିଗଲେ ଅଥଚ ୮୪ ବର୍ଷିୟାନ ମୋରାରଜୀ ତାଙ୍କର ପାଖରେ ବସି ବି ବଞ୍ଚିଗଲେ ।

ନିୟତିର ଏଇ ଗତିକୁ ବୁଝିବାର ଅଛି । ଆଉ କେଉଁ ପ୍ରଧାନ ମନ୍ତ୍ରୀ ବା ମୁଖ୍ୟମନ୍ତ୍ରୀ ନିଜ ପୁଅ ଶାସନରେ ହସ୍ତକ୍ଷେପ କରୁଛି ବୋଲି ପ୍ରମାଣିତ ହେଲେ ପ୍ରଧାନମନ୍ତ୍ରୀ ଆସନ ଛାଡ଼ିଦେବେ ବୋଲି କହିଛନ୍ତି କି ?

ଆଖି ଆଗରେ ପରା କାଇରନ୍ଙ୍କ ଠାରୁ ଇନ୍ଦିରାଙ୍କ ଯାଏଁ ନିଜ ପୁଅର ଦୁଷ୍କୃତିକୁ ଘୋଡ଼ାଇବାକୁ ଯାଇ ନିଜେ ଗାତରେ ପଡ଼ିଲେ । ଓଡ଼ିଶାର ମୁଖ୍ୟମନ୍ତ୍ରୀ ପଦରେ କାହାର ପାଞ୍ଚ ବର୍ଷ ମିଆଦ ପୂର୍ଣ୍ଣ ହୋଇଛି କି ?

କାହିଁକି ହୋଇନାହିଁ ?

ଏ ସିଂହାସନ ମୈତ୍ରୀଦେବ ଜଗନ୍ନାଥଙ୍କର । ସେ ସାମ୍ୟ ଓ ନ୍ୟାୟର ପ୍ରତିଧ୍ୱନି ସମ୍ବିଧାନର Feternity with diginity ଘୋଷଣାରେ ।

ଯିଏ ଭଡ଼ାଟିଆ ବା ଘୋଡ଼ାଣିଆଙ୍କ ଗହଣରେ ଫୁଲୁଛନ୍ତି ସିଏ କେମିତି ବ୍ୟକ୍ତି ମର୍ଯ୍ୟାଦା ବୁଝିବେ ? ଫଳରେ ରାଜଧାନୀରେ ପଟୁଆର ଲାଗି ଭଡ଼ାଟିଆ ଆଣିଲା ବେଳେ ବସ୍ ଓଲଟି ପଡ଼ୁଛି ।

ଜଗନ୍ନାଥଙ୍କ ରଥ ଚକ ଭାଙ୍ଗି ଯାଉଛି ।

କାମ୍ଭା ଆଗରୁ ଗୁମ୍ଭା ପଡେ । ଅନ୍ୟାୟର ଲଙ୍ଗିଡକୁ କ୍ଷମତାର ଔଦ୍ଧତ୍ୟ ସାବଧାନ ହେଲେ ସିନା । ଯେମିତି କ'ଣ ସନ୍ଥ-ବଦନାବା ଇନ୍ଦିରାଙ୍କୁ ଆଶିର୍ବାଦ କରି ନ ଥିଲେ କ ? ତାଙ୍କୁ ବଞ୍ଚାଇବାକୁ ଶିଠି ପୋଡ଼ିଦେଲେ ବୋଲି ଶୁଣିବାକୁ ମିଳୁଛି । ଆମର ଏଠି ଯେଉଁ ସ୍ୱାମୀ-ବାବା ମାନେ ମନ୍ତ୍ରୀ ମେମ୍ବରଙ୍କୁ ଧରି ଆତ୍ମ ବିଜ୍ଞାପନ କରୁଛନ୍ତି । ସେମାନେ ହେଲେ ଗାଁ ଗୋହରୀକୁ ଯାଇ···ଗାନ୍ଧିଜୀଙ୍କର ସେଇ କାମନା ବ୍ରତକୁ ଟିକିଏ ପାଳନ କରନ୍ତେ ।

'ଝୋପାଏ ଲୁହ ପୋଛି ଦିଅ ।'

ଜୟପ୍ରକାଶଙ୍କୁ ବଞ୍ଚାଇବାକୁ ପଞ୍ଚାୟତ ମୁନସିପାଲିଟି ଆଇନରେ ରିକାଲ୍ (Recall) ବ୍ୟବସ୍ଥା କରିଦିଅ ।

ଗାନ୍ଧିଜୀଙ୍କ Trusteeship ଅନୁସରଣରେ ମଠ ବାଡ଼ି ମନ୍ଦିର ଦେବୋତ୍ତରକୁ ଗ୍ରାମପଞ୍ଚାୟତକୁ ଦେଇ—ଗ୍ରାମ ପଞ୍ଚାୟତକୁ ଦଳୀୟ ପ୍ରଭାବରୁ ମୁକ୍ତ କରି ଗାନ୍ଧିଜୀଙ୍କ ସ୍ୱରାଜ୍ୟ ଓ ଜୟପ୍ରକାଶଙ୍କ ମୁକ୍ତ ସମାଜ ଆଦର୍ଶର ଭିତ୍ତି ସ୍ଥାପନ କର ।

ଏହାହିଁ ହେବ ପ୍ରକୃତ 'ଗାନ୍ଧିସ୍ମାରକୀ' ଓ ଜୟପ୍ରକାଶ 'ଅମୃତ' ।

ନହେଲେ ତ ମୁର୍ଦ୍ଦାର କାନ୍ଧିଆ ହରିବୋଲ ସାଙ୍ଗକୁ ଧନର ହରିଲୁଟ ଆଡ଼ମ୍ବର ପ୍ରଦର୍ଶନ ।

ଦାନବୋଲି ଯାହା ଦେଖାଯାଉଛି ତାହାତ ଧନୀଙ୍କ ଆତ୍ମ ବିଜ୍ଞାପନ । ଏଥିରେ ସୌହୃଦ୍ୟତା କାହିଁ ? ମର୍ଯ୍ୟାଦା କାହିଁ । ଓଡ଼ିଶାରେ କାଙ୍ଗାଳ ଭୋଜନ ନଥିଲା—ଥିଲା ଅତିଥି ସେବା । ସେ ସତ୍ୟର ପ୍ରମାଣ ପଙ୍କାର ମୋହନଙ୍କ ଉତ୍କଳ ଭ୍ରମଣରେ କୁନ୍ତଳା କୁମାରୀ ସାବତଙ୍କ ଓଡ଼ିଆ କାହାଣୀରେ ।

●

# କାନ ଦରାଣ୍ଡି ଡୋଳ ଖୋଜିବା

ଯୋଗକୁ ଧର୍ମ-ଗଣ୍ଡିକ ସମସ୍ୟା ଖାଲି ଆମର ଏଇଠି ଏତେଦିନ ପରେ ଉଠିନାହିଁ ତେଣେ ରାଷ୍ଟ୍ରସଂଘରେ ମଧ୍ୟ ଧର୍ମ ଗଣ୍ଡିକଙ୍କ ଏଇ ଫାଙ୍କ ଫୁଟି ବାହାରୁଛି । ଏ ଫାଟକୁ ଯିଏ କାହୁଅ ନେସି ଗେବେଗ୍-ଗେବଗ୍ କରି ନିଜ ମିଆଦ ପୂରାଇଦେବେ ବୋଲି ଯାଞ୍ଚୁଛନ୍ତି—ସେମାନେ ଋଷିଆ—ଏମେରିକା— ଆରବ—ଇସ୍ରାଏଲ ବା ଗୋରା କଳାଙ୍କ ସଂଘର୍ଷ ଓ ସମାଧାନକୁ ନବୁଝିଲେ ବି ପ୍ରତିବେଶୀ ପଶ୍ଚିମବଙ୍ଗ କି ଆନ୍ଧ୍ର ପ୍ରଦେଶର ଅଥବା କେନ୍ଦ୍ରରେ କ୍ଷମତାସୀନ ଓ ବିରୋଧୀଦଳଙ୍କର ଯୁକ୍ତି—ତର୍କ ତଥ ନ୍ୟାୟ ନିଷ୍ପତ୍ତିକୁ ଦେଖିଲେ ଦେଖନ୍ତୁ । ଆଉ ଏଣିକି ଏଠି ଏ କାରଖାନା ବସିବ—ଏଇ ଯୋଜନା ହେଲିଛି । ଏହିପରି ବକ୍ତୃତା ଶୁଣାଇ ଦରିଦ୍ର—ବଞ୍ଚିତ—ଲାଞ୍ଛିତ—ଜନତାକୁ ଭୁଲାଇ ରଖିହେବ ନାହିଁ । ଆଉ ଦଲାଲଙ୍କୁ ପୋଷି ଭୋଟରଙ୍କୁ ଦବାଇ—ଲୋଭାଇ ଚୌକି କଣି ହେବ ନାହିଁ । ଶ୍ରୀମତୀ ଗାନ୍ଧୀଙ୍କ କ୍ଷମତା କ୍ଷୁଧା, ଓ ତାକୁ ପରିତୃପ୍ତ କରିବାକୁ ନ୍ୟାୟ-ଅନ୍ୟାୟ ଆଇନ୍ ସବୁ ବାଛି ବିଚାର କୁ ମାଡ଼ିଦଳି ଦେବାର ଯେଉଁ ପ୍ରତ୍ୟକ୍ଷ ଅନୁଭବ ହୋଇଗଲା ଆଉ ସେଥିରେ ମନ୍ତ୍ରୀ ମେମ୍ବରଙ୍କର ଘାଇ-ଭଜଣୀ ଡାକରାର କିଛି ମୂଲ୍ୟ ରହିଲା ନାହିଁ । ଏଣିକି ଭୋଟର ତାର ଅଗଣନ ଅନୁଭବରୁ ମନ୍ତ୍ରୀ ମେମ୍ବରଙ୍କ ପାରଙ୍ଗମତା ତଥା ହାକମ ହୁକୁମାଙ୍କ ଚଞ୍ଚଳତାକୁ ପରଖିନେବେ ।

ହଜାର ହଜାର ବର୍ଷ ଧରି ବର୍ଣ୍ଣଭେଦ ଓ ପୁରୁଷାନୁକ୍ରମିକ ସତ୍ତ୍ୱାଧିକାର ସୃଷ୍ଟି କରି...ସମାଜର ଥୋକେ ଚଲ୍‌ତାପୁର୍ଜା । ଆଉ ଲୋକଙ୍କୁ ଶୋଷଣ ପେଷଣ ଓ ତୋଷଣ କରି ଚୌକିରେ ବସିରହିବା ସହଜ ହେବନାହିଁ ।

ଏ କଥା ଅବଶ୍ୟ ଆମକୁ ମାନିବାକୁ ହେବ ଯେ ଆମେ ପ୍ରତ୍ୟେକେ ସମାଜର ମଧ୍ୟବିତ୍ତ ଶିକ୍ଷିତ ରୂପେ···ନିଜ ସ୍ୱଚ୍ଛଳତା ଓ ନିଶ୍ଚିନ୍ତତା ଲୋଭରେ ବରାବର ହୋଇ ଆସିଛୁ—ସମାଜର ଉଚ୍ଚବିତ୍ତ ବା କ୍ଷମତାଧରଙ୍କ ଦଲାଲ୍, ଉଡ଼ାଣିଆ ନିହାତି ବେଳକୁ ହୋଇ ଆସିଛୁ ବାବା—ମାଙ୍କ ଗୋଡ଼ାଣିଆ । ଏଇ ବାଟରେ ଇଜ୍ଜତକୁ ଦରଣ୍ଡିବାକୁ ଯାଇ ବେ-ଇଜତ ହେଉଛୁ ପଛେ କିନ୍ତୁ ସମ୍ପତ୍ତି ସଂଚୟ କରି ପୁଅ ଝିଅଙ୍କ ମାର୍ଫତ ପୁଣି ଇଜତଦାର ବୋଲାଉଛୁ । ଫଳରେ ବାପା-ମାଙ୍କ ଅର୍ଥ ଓ କ୍ଷମତା ବଳରେ ପୁଅ ଝିଅ ଯେପରି ସମାଜରେ ଉନ୍ନତ ଓ ଅମଣିଷ ହୋଇ ଯାଉଛନ୍ତି ତାଙ୍କର ସାଙ୍ଗ ଗରିବଙ୍କ ପୁଅଝିଅ ସେଇପରି ଜଡ଼ପିଣ୍ଡତ ଓ ବିରକ୍ତ ହୋଇ ଯାଉଛନ୍ତି । ବିଦେଶୀ ଶାସକଙ୍କୁ ତଡ଼ିବାକୁ ଗାନ୍ଧିଜୀଙ୍କ ପ୍ରେରଣାରେ ଯିଏ ଧନୀଦରିଦ୍ର ଭେଦ ଭୁଲି ବ୍ରାହ୍ମଣ-ପଠାଣ ମାଳିକ ମୂଲିଆ ସବୁରି ଗୁଡ଼ କାନ୍ଧ ମିଳାଇ ତାଳପକାଇ ଚାଲିଥିଲେ···ସ୍ୱଦେଶୀ ଶାସନରେ ତାଙ୍କର ପୁଅଝିଅ ଯେତେବେଳେ ଘରେ ବାହାରେ ସ୍କୁଲକଲେଜରେ ବେଶ ପୋଷାକରେ 'ସିନେମା ଥିଏଟର ସଭା-ସମିତିରେ ଉପର ତଳ ଚୌକିରେ ବସିଲେ । ସେତେବେଳେ ତାଙ୍କ ମନ ଭିତରେ···ଆଉ ସେ ଯୁଗର—ସ୍ୱରାଜଭସ୍ମା, ଅଲ୍‌ବତ୍ ହୋଗା ଛୋଡ଼୍ କେ ଆଓ ଗୋଲାମୀ, କିମ୍ବା 'ଆମେ କେଇ ଜଣ ପରାଣ ନଦେଲେ'—ବାପା ଭାଇଙ୍କର ସେ ଗୀତ ସ୍ୱର ଓ ରାଗ ଫୁଟିଲା କି ?

ଭାଗ୍ୟ ଚକ୍ରରୁ ଜନତା ଶାସନରେ···ଯେଉଁ ବଞ୍ଚିତ-ଲାଞ୍ଛିତ କୁମାର କୁମାରୀଙ୍କ ପ୍ରାଣରେ ବାପା-ଦାଦାଙ୍କ ସେଇ ସ୍ୱପ୍ନ-ସଙ୍ଗୀତ ସ୍ପନ୍ଦିତ ହେଲା··· ତାହାହିଁ ଆଜି ଜନତାଦଳର କେନ୍ଦ୍ର ନେତୃତ୍ୱ ମାତ୍ର ଘୋଷଣା ବା ମନ୍ତ୍ରୋଚ୍ଚାରଣ ରେ ଅନ୍ତତଃ ମୁଖରିତ ହେଉଛି ।

ପ୍ରଧାନମନ୍ତ୍ରୀ ମୋରାରଜୀ ଭାଇ ଖାଲି ନିର୍ଭୟ ହେବାକୁ ଡାକରା ଦେଇନାହାନ୍ତି—କାନମୋଡ଼ ଭଙ୍ଗି ଦେଖାଇବାକୁ ବାରମ୍ବାର କହୁଛନ୍ତି । ସ୍ୱରାଷ୍ଟ୍ର ମନ୍ତ୍ରୀ ଚରଣ ସିଂହ ପୁଲିସଙ୍କଠାରୁ କଲେକ୍ଟର—ସେକ୍ରେଟେରୀଙ୍କ ଯାଏଁ—ଲିଖିତ ନିର୍ଦ୍ଦେଶ ନାମା ଦେଉଛନ୍ତି ଯେ ବେଆଇନ୍ ଅନ୍ୟାୟ ହୁକୁମକୁ ମାନିବାକୁ ବାଧ୍ୟ ନୁହେଁ । ଲିଖିତ ହୁକୁମ ଦାବୀକର—ଆମ ପ୍ରୀତି-କାମନା ଗୁଡ଼ ଯାହା ଉଚିତ ଓ ଆଇନ ସମ୍ମତ ସେଇପରି ହିଁ ପରାମର୍ଶ ଦିଅ ।

ପ୍ରତିରକ୍ଷା ମନ୍ତ୍ରୀ ଜଗଜୀବନରାମ କହୁଛନ୍ତି ଦୁର୍ବଳ ଶ୍ରେଣୀକୁ ସମାଜରେ ସମ୍ମାନ ଇଜ୍ଜତ ନଦେବା ଯାଏ ଅସ୍ପୃଶ୍ୟତା ଛୁଟିବ ନାହିଁ । ଦଳର ସଭାପତି ଚନ୍ଦ୍ରଶେଖର କହୁଛନ୍ତି—ନୋଳିଆ ସାହାରେ ଯିଏ କୋଠାତୋଳି କଳା ଟଙ୍କାକୁ ଧଳା କରୁଛି ସେ କ'ଣ ତଫସିଲ୍ ଜାତିକା ବୋଲି ଦୁର୍ବଳ ଶ୍ରେଣୀ ରୂପେ ଗଣ୍ୟହେବ ?

କେବଳ ଜନତା ନେତୃତ୍ୱ ନୁହେଁ···ଯାଙ୍କୁ ବାମପନ୍ଥୀ ନେତୃତ୍ୱ ମଧ୍ୟ ପ୍ରଶ୍ନ କରୁଛି—କେଇ ହଜାର କୋଟି ଟଙ୍କା ବଜେଟ ମଧ୍ୟରୁ କାହା ପକେଟକୁ କେତେ ଯାଉଛି ।

ଯିଏ ଶୋଷଣ ଓ ଲୁଣ୍ଠନରେ ଅଭ୍ୟସ୍ତ ସେଇ ବିତ୍ତବନ୍ତଙ୍କର ଚିରନ୍ତନ ଅଭ୍ୟାସ କଣ ସହଜରେ ଚାଲିଯିବ । ଆମର ଏଠି ଜଣେ ଜଣେ ଏମ୍. ଏଲ୍. ଏଙ୍କ ମୂଲ୍ୟ ଦୁଇଲକ୍ଷ ଟଙ୍କାରୁ ଅଧିକ ହେଲାଣି ବୋଲି ସମ୍ବାଦ-ପତ୍ରରେ ପ୍ରକାଶ ପାଇଲାଣି । ୧୯୪୭ ରେ ଯିଏ ରାଏବାହାଦୁର ଲାଗି ଇଂରେଜ୍ ସରକାରଙ୍କୁ ଟଙ୍କା ଦେଇଥିଲେ ତାଙ୍କର ପୁଅ ନାତି ୧୯୭୭ ଫେବୃୟାରୀ ମାସରେ କଂଗ୍ରେସ ଦଳକୁ ନଅକୋଟି ଟଙ୍କା କମିଶନ ଚାନ୍ଦା ଦେଇଥିଲେ । କିଏ କହିବ ଆମର ଜନତା ନେତା—ମନ୍ତ୍ରୀଙ୍କ ମନକୁ ସେଇ ନ୍ୟସ୍ତ ସ୍ୱାର୍ଥ ଶ୍ରେଣୀଙ୍କ ଭିତରୁ କିଏ କେଉଁ ଉପାୟରେ କେମିତି କିଣୁଛି ।

ପ୍ରଧାନମନ୍ତ୍ରୀ ମୋରାରଜୀ ଭାଇ ସିନା ଶାନ୍ତିଲାଗି ଆଣବିକ ବିସ୍ଫୋରଣ ପ୍ରସଙ୍ଗରେ ଲୋକସଭାରେ ଠେକ୍ ଠୋକ୍ କହିଦେଇଛନ୍ତି ଯେ—ଆମେ ପ୍ରତ୍ୟକ୍ଷ ଉଦାହରଣରେ ନଦେଖାଇଲେ କିଏ କାହିଁକି ନେତା ବୋଲି ବିଶ୍ୱାସ କରିବ ?

ଅପର ପକ୍ଷରେ ସେଦିନ ଟେଙ୍ଗା ଠାରେ ଯେଉଁ ରେଲ ଦୁର୍ଘଟଣା ହୋଇଗଲା ସେଥିରେ ଯିଏ ନବାପଦରେ ବଞ୍ଚିଗଲେ ସେଠି ତାଙ୍କର ସାକ୍ଷାତ୍ ଆଚରଣର ଯେଉଁ ପ୍ରତ୍ୟକ୍ଷଦର୍ଶୀ ବିବରଣୀ ପ୍ରକାଶ ପାଇଛି···ସେଥିରେ ଆମର ଭିତରୁ ସମାଜ—ସୁନ୍ଦର—ସୁଜନ ଲଜ୍ଜିତ ନହୋଇ ରହିବ ?

ଯିଏ ବଞ୍ଚିଗଲେ ସିଏ ଯୋଡ଼ିଯାଡ଼ି ହୋଇ ଶୋଇଲେ ନହେଲେ ନଅ ଜାଳି ଉତ୍ତମ ଟାଣିଲେ । ଆଜି ପାଖରେ ଯିଏ ଆହା ଓଃ ଲେଖି ଚିତ୍କାର କରୁଥିଲେ ତାଙ୍କର ସେ ଦେ ସୁଙ୍କ କାନରେ ପଶୁନଥିଲା । ହୁଏତ ପଶିଥିଲେ

ମୁରାଦବଙ୍କ ସ୍ରଷ୍ଟା କରୁ କମିଯାଇଥାନ୍ତା । ଏବେ ଯିଏ ଦୁର୍ଭିକ୍ଷ ପାଣି ସମ୍ବାଦ କରି ଦାନ୍ତା ନେତା ବୋଲାଉଛନ୍ତି ସେମାନେ ଗୋପବନ୍ଧୁଙ୍କ ସେଇ ପଦକ— 'ଆହା କହିବାକୁ ସତା' କହିବାକୁ ଭୁଲି ଗଲେଣି ।

ଓଲଟା ଏବେ କ୍ଷମତାରେ ବସି ପାରୁନୁ ବୋଲି ଅନ୍ୟଙ୍କୁ ମରାଇ ରେଲ୍ ଲାଇନ୍ କାଟୁଛୁ ତ ବସ ପୋଡୁଛୁ । ଏତେ ଧାପଦ ହେଉଥିଲେ ବି ଆନ୍ଧ୍ର କଂଗ୍ରେସ୍ ସରକାର ଙ୍କୁ ଅନ୍ୟଦଳକୁ ସାହାଯ୍ୟ ମାଗିବାକୁ ଲାଜ ମାଡୁଛି ବୋଲି ଖୋଦ୍ ପ୍ରତିରକ୍ଷା ମନ୍ତ୍ରୀ ଶ୍ରୀରାମ କହିଛନ୍ତି—ଏଣେ କନ୍ତୁ ରାଜ୍ୟସଭାରେ ସ୍ୱରାଷ୍ଟ୍ର ରାଷ୍ଟ୍ରମନ୍ତ୍ରୀ ସଫାକହିଦେଇଛନ୍ତି ଯେ—ସମ୍ପତ୍ତି ଅଧିକାର ରହିବ ନାହିଁ ।

ସ୍ୱରାଷ୍ଟ୍ର ମନ୍ତ୍ରୀ ନିଜେ ଘୋଷଣା କରି ଦେଇଛନ୍ତି ଯେ ଶାସକଦଳକୁ ଆଉ ରାଜନୈତିକ (politicalize) କରହିବ ନାହିଁ ।

ତାମିଲ୍ଠାରୁ କର୍ଣ୍ଣାଟକ, ଅନ୍ଧ୍ରଯାଏ ଦ୍ରଢ଼ତାରେ ଏ ଝଡ଼ ତୋଫାନ୍ ହୋଇଗଲା ଏଣେ ପାର୍ଲିଆମେଣ୍ଟରେ ଧମ ଓ ଚହେବଙ୍କ ମଧ୍ୟରେ ଯେଉଁ ଝଡ଼ ତୋଫାନ୍ ବହୁଛି ! ତାହା ଯିଏ ଅକ୍ଷରରେ ପଢ଼ୁନାହାନ୍ତି ସିଏ ରେଡ଼ିଓରୁ କାନରେ ଶୁଣୁଥିବେ ।

ନେତା କର୍ତ୍ତାଏ ଯିଏ ଯେମିତି ଶୁଣନ୍ତୁ—ନଶୁଣନ୍ତୁ, କରନ୍ତୁ, ନକରନ୍ତୁ କାଳକାଳର ଶୋଷିତ—ଲୁଣ୍ଠିତ ଯେ ଆଶାବାଡ଼ି ଧରି ବାହାରିଲେଣି— ସେକଥା ବାବୁଭାୟା ଦେଖି ନଦେଖୁଥିଲେ ବି କମ୍ପା ବେତନଆ ସୁରୁଖଲିଆ ଖାତିର ନକରୁଥିଲେ ବି ମଧୁଲିମିଆଙ୍କ ପରି ଭୂଇଁନେତା ଜନତା ଦଳର ଅର୍ଥନୀତି ଘୋଷଣାର ଦେଶୀ ବିଦେଶୀ ସମାଲୋଚକଙ୍କୁ ଅକୁଣ୍ଠ ଚିତ୍ତରେ କହିଦେଇଛନ୍ତି—'ଆମ ଅର୍ଥନୀତି ସାମାଜିକ ନ୍ୟାୟର ପରୀକ୍ଷା...ପଣ୍ଡିତଙ୍କ ପ୍ରବନ୍ଧରେ କି ଦଳୀୟ ପଟୁଆର ନୁହେଁ—ଏ ପରୀକ୍ଷା ଯାସମୁନ୍ଦ ବାସିନ୍ଦାଙ୍କ ଅଗଣାଗ୍ରରେ ।'

ପାଠକେ ! ଉପରୋକ୍ତ କେଇଟି ମୁଖ୍ୟଘୋଷଣା ଏଇ ସମ୍ପାଦକର । ଏତେ ବର୍ଷପରେ ଶାସନନୀତିର ଏଇ ବଦଳକୁ ଆମ ଶିକ୍ଷିତ ମଧ୍ୟବିତ୍ତ ସମାଜ...କେତେଦୂର ମନଧ୍ୟାନ ଦେଉଛନ୍ତି ତା ସାକ୍ଷୀ ତାଙ୍କ ବିବେକ ।

କିନ୍ତୁ ଯୋଗକୁ ଏଇ ସପ୍ତାହରେ ଯେଉଁ ବିବାହ ବୃତ୍ତ ତଥ୍ୟପତ୍ରଗଲା ଏବଂ ସେଥିରେ ଭଜା—ଶିଖା ସମ୍ବନ୍ଧରେ ଆକାଶବାଣୀରୁ ଯାହା ଯେତିକି କୁହାଗଲା—ତାକୁ କେମିତି କିଏ ଖଣ୍ଡନ କରିବେ କରନ୍ତୁ ।

(କ) ୨୩ । ୧୧ । ୭୭ ସନ୍ଧ୍ୟାରେ କଟକ ଆକାଶବାଣୀରୁ 'ଆମଘରକଥା' କାର୍ଯ୍ୟକ୍ରମରେ 'ତେଲ ତେଲିଆ—ତେଲ ଘଉଠାରୁ ତେଲ୍-ଦିଆଗାଁ' ପାଏ ଯାହା କୁହାଗଲା ସେଥିରେ ସୁପରପାଓ୍ୱାରଙ୍କ ମାରଣାସ୍ତ୍ର ସଙ୍ଗେ oilkingଙ୍କର ଯେଉଁ ଶକ୍ତି ପ୍ରତିଦ୍ୱନ୍ଦ୍ୱିତା ଏବଂ ସେଇ ଖିଅ ଧରି ଗଲେ ଆମର କଉ ସୁଆଦର ଭଜା ଶିଖାପାଏ ଯେଉଁ ଅଙ୍ଗାଙ୍ଗୀ ସମ୍ପର୍କ··· ତାକୁ ଯୋଗାଣ ମନ୍ତ୍ରୀ ହରିଚନ୍ଦନ ବୁଝନ୍ତୁ କି ନବୁଝନ୍ତୁ—ବାଣିଜ୍ୟମନ୍ତ୍ରୀ ଆଡ୍‌ଭାନୀ କି ପ୍ରଧାନମନ୍ତ୍ରୀ ମୋରାରଜୀ ଯେ ବୁଝୁଛନ୍ତି ସେ କଥାର ପ୍ରମାଣ ମିଳିବ—ଯୋଗ୍ୟ ଯୋଗେଯନ୍ ଯୋଜୟେତ ! ନହେଲେ ତ ଚାଲିଛି—"ଯାହା କୁ ସହୁଛି କନିଆ ଶାଶୁ ଘିଅର ଉପରେ ମହୁ ବରଷୁ ।"

(ଖ) ଇଏତ ଗଲା ଶୋଷଣ ତେଲ କି ମିଲ୍ ଲୁଗାର କଳାବଜାର କଥା—ସେଇ ବିବାହ ତଥ୍ୟର ଭୋଜି ଭିତର ଗୋଟାଏ ସାକ୍ଷାତ୍ ସଙ୍କଟର ସାମାଜିକ ଚେତନାକୁ ଦେଖନ୍ତୁ । ଅତିଥିଙ୍କ ମୁଣ୍ଡର ସଂଖ୍ୟା ଗଣତିରେ କନ୍ୟାପିତାଙ୍କ ଇଜ୍ଜତ ତଉଲ । ଯେ ଚୌକିରେ ବସି ଟେବୁଲ୍ ଉପରେ ଖାଇ ଦାନ୍ତରେ ତର୍କାରିର ସୁଆଦ ଅସୁଆଦ କଥା କହିଗଲେ ଆଜି ସିଏ ରିକ୍‌ସାରେ ପହଞ୍ଚି କାଣ୍ଡ କାରଖାନା ଦେଖି ଆପଣ ଇଜ୍ଜତ ରଖି ଚାଲିଆସିଲେ ?

ସିଏ ଗଲେ ତହୁଁ ଆରଦିନ ଦପ୍ତରରେ ସାଆନ୍ତଙ୍କ ଠା' ଚିଠାକୁ ଯେତି ଧମାଦରିଦ୍ର ହାକିମ ଚପରାସୀ ସମାନ । ଝିଅରବେଶଠାଣି—ସାହେବାଣୀ । ବର ସାଙ୍ଗେ ବିଦେଶ ଚାଲିଯିବ । ଆଉ ଗାଁର ଯେଉଁ ବୁଢ଼ୀପିଉସୀ ମାଉସୀ ଡ଼ାକରା ପାଇ ଆସିଥିଲେ ?

କନ୍ୟାପିତାଙ୍କୁ ଏଇ ଇଜତ୍ କଣା କଥା କହିଲାରୁ ଯେଉଁ ଛଦକ ଉତ୍ତର ମିଳିଲା "ବିବାହରେ ପଚିଶଟଙ୍କା ପରିବର୍ତ୍ତେ ପଚିଶ ହଜାର ଖର୍ଚ୍ଚ କଲି ବୋଲିତ ଝିଅଜୋଇଁ ବର୍ଷକୁ ଲକ୍ଷେ ରୋଜଗାର କରିବେ ?"

ବାବୁ ଜଣକ ପ୍ରଥମଶ୍ରେଣୀ ଅଫିସର । ଯାଙ୍କ ବାପାଅଜାଙ୍କ ଲେଖା ପୋଥି ଏବେ ସରକାର କାଣିନେଇ ଯେଉଁ ଟଙ୍କା ଦେଉଛନ୍ତି—ତାର ଭାଗ ବଣ୍ଟା ବିବାଦ ଲାଗିଛି । ଜଗନ୍ନାଥଙ୍କ ଦେଉଳରେ ପଚିଶ ଟଙ୍କାରେ ରେଜଗାଣ୍ଡିଆ ବରକନ୍ୟାଙ୍କ ବିବାହ ହେଉଛି । ସହରରେ ଆଡ଼ମ୍ବର ଓ ଯୌତୁକରେ ଇଜତ କଣା ହେଉଛି । ଅଥଚ ସାକ୍ଷୀଗୋପାଳ ତୋଟାରେ ବୃନ୍ଦାବନ ବିବାହ ଦିନ ଯେଉଁ ବରକନ୍ୟାଙ୍କ ବିବାହ ହୋଇଗଲା ? କେତେ ଟଙ୍କା ଖର୍ଚ୍ଚ ? କେତେ ଲଗାଣ ଉଠାଣ ? ସେଠି କୁଳର ମାନ ! ଡାଲମା ପ୍ରସାଦରେ ସମ୍ମାର୍ଷଣ ।

ଏ ଦୁଇଟି ଘଟଣା ସଙ୍ଗେ ଜନତା ଶାସନର ଉଲ୍ଲିଖିତ ଘୋଷଣା କେଇଟିକୁ ମିଳାଇଲେ···ଆମ ସାମାଜିକ ପ୍ରଚଳିତ ଗୁହାଣି ଓ ଚଳଣିରେ ଯେଉଁ ଠାଣି ବିପ୍ଳବର ସଙ୍କେତ ତାକୁ ରାଜଧାନୀ ବା ସହର ଜନସାଧାରଣ ନବୁଝିଲେ ବି ତାକୁ ଗାଁ ଗୋହିରୀର କେଉଟୁଣୀ—ଧୋବୁଣୀ ବୁଝିଗଲେଣି । ଆଉ ସେ···'କାଣିନେଇଗଲା କାନ' କହି ଯାଙ୍କୁ ଭୁଲେଇ ହେବନି, ଏଣିକି ଏମାନେ ଷେଣ ପ୍ରବ୍ରଜକଙ୍କଠାରୁ ଦଳୀୟ ପଟୁଆରଠାରୁ ମନ୍ତ୍ରୀ ମେମ୍ବରଙ୍କ ସଭା ନାଚଯାଏ କାନ ଦବାନ୍ତି ବୋଲି ଖୋଜିବେ ।

---

EARTH PROVIDES ENOUGH TO SATISFY EVERY MAN'S NEED, BUT NOT FOR EVERY MAN'S GREED.

—*Gandhi*.

# ଷଟ୍‌ଦର୍ଶନ

"Those who have come to Power both at the center and the states did not under go a corresponding ideological transformation." ଅର୍ଥାତ୍‌ କେନ୍ଦ୍ରରେ ହେଉ ବା ରାଜ୍ୟରେ ହେଉ ଯେଉଁମାନେ କ୍ଷମତାସୀନ ହେଲେ ସେମାନଙ୍କର ସମ୍ପୃକ୍ତ ଆଦର୍ଶଗତ ପରିବର୍ତ୍ତନ ହୋଇନଥିଲା ।

ଅଧ୍ୟାପକ ଗୋରେଙ୍କ ସମ୍ପାଦିତ 'ଜନତା' ପତ୍ରିକାର ପ୍ରତିନିଧିଙ୍କ ସଙ୍ଗେ ପ୍ରଶ୍ନୋତ୍ତର କ୍ରମେ ଜୟପ୍ରକାଶ ନାରାୟଣଙ୍କର ଉଲ୍ଲିଖିତ ଗୋଟିଏ ବାକ୍ୟ ହିଁ ଆମ ରାଜ୍ୟର ଜନତା ମନ୍ତ୍ରିମଣ୍ଡଳକୁ ବିଜୁ ପଟ୍ଟନାୟକଙ୍କ ସମସ୍ତ ସମାଲୋଚନାର ଗୁରୁକାଠି । ଏମାନଙ୍କର ଆବଶ୍ୟକାନୁ ଆଦର୍ଶଗତ ପରିବର୍ତ୍ତନ ହୋଇନାହିଁ ।

ପୁଣି ସେହି ସାକ୍ଷାତ୍‌କାରରେ ଜୟପ୍ରକାଶଙ୍କର ଆଉ ଗୋଟିଏ ବାକ୍ୟ—"What Gandhji wanted was to popularise the theory and practice of trusteeship and he used to say that conversion should precede legislation."

ଗାନ୍ଧିଜୀଙ୍କ Trustee:hip ତତ୍ତ୍ୱକୁ ଆମ ନେତା-କର୍ତ୍ତାଙ୍କ ଭିତରୁ କେଇ ଜଣ ବୁଝିଛନ୍ତି । ତାହା ବୁଝିଥିଲେ ଆଜି ଏ ଦେଶର ଦୁର୍ଗତି ହୋଇ ନ ଥାନ୍ତା । ମନ୍ତ୍ରୀମାନେ ଯେ ସାମଗ୍ରିକ ଟ୍ରଷ୍ଟି ଏକଥା ଖିଆଲ ରଖିଥିଲେ କ୍ଷମତାର ଏପରି ଅପବ୍ୟବହାର ହୋଇନଥାନ୍ତା । କମ୍ପା କୋଠ ପାଣ୍ଠିର ଏପରି ବରବାଦ ହୋଇନଥାନ୍ତା ।

ଏଇଥିଲାଗି ଜୟପ୍ରକାଶଙ୍କ ଉପରୋକ୍ତ ମନ୍ତବ୍ୟ ଯେ ଆଇନ ହେବା ପୂର୍ବରୁ କର୍ତ୍ତାଏ ଦୀକ୍ଷିତ ହେବା ଜରୁରୀ । କିଏ କହିବ ଖ୍ରୀଷ୍ଟିୟାନ ମିଶନାରୀଙ୍କ ଏଇ କନ୍‌ଭରସନ୍‌କୁ ଦେଖି ଗୋପବନ୍ଧୁ ସାକ୍ଷୀଗୋପାଳର ପଞ୍ଚସଖାଙ୍କ ଦୀକ୍ଷିତ

କରନଥିଲେ ! ମନ୍ତ୍ରୀଙ୍କ ଆଚରଣ ଦେଖି ସାଧାରଣ ଲୋକେ ଶିଖନ୍ତି । ମନ୍ତ୍ରୀ ପଦ ତାଙ୍କୁ ଲୋକ ପ୍ରଦତ୍ତ କ୍ଷମତା ଓ କୋଠ ପାଣ୍ଠିର ଏକ ଟ୍ରଷ୍ଟି ତତ୍ତ୍ୱକୁ ବୁଝିଥାନ୍ତେ ତାହାହେଲେ ତାଙ୍କର ଅଧିକାର ସଙ୍ଗେ ଯେଉଁ ଦାୟିତ୍ୱ ବୋଧ ସଞ୍ଚାରିତ ହୋଇଥାନ୍ତା ତାହାହିଁ ଆଜି ସାଧାରଣ ନାଗରିକଙ୍କୁ ତଥା ସବୁ ନିର୍ବାଚିତ ସଦସ୍ୟଙ୍କୁ ଓ ତାଙ୍କ ଅଧିନସ୍ଥ ସମସ୍ତ ବେତନପ୍ରାପ୍ତ ସରକାରୀ କର୍ମଚାରୀଙ୍କୁ କମ୍ବା ସମାଜ ମଙ୍ଗଳ-ଖାଦି ବୋର୍ଡ-ପଞ୍ଚାୟତ ମୁନିସିପାଲିଟି ପ୍ରଭୃତି ବେସରକାରୀ କର୍ମକର୍ତ୍ତାଙ୍କୁ "Collective Responsbility. ବା ସାମୂହିକ ଦାୟିତ୍ୱ ବୋଧ ବା କୈଫିୟତଦାୟୀରେ ସଂଯତ ଓ ସଂଯତ କରି ପାରିଥାନ୍ତା । ଦଳୀୟ ବିବାଦ-'ତୋର ମୋର' ପଶିପାରି ନଥାନ୍ତା । ସରକାରୀ ମାଲ ଦରିଆ ମେ ଡ଼ାଲ୍ ଏଇ ମନ୍ତ୍ର ଚାଲିନଥାନ୍ତା ।

ଇତିହାସର ପଦ । ଆଜି ଏହା ସାହା କମିଶନ ଠାରୁ ରେଡ଼ି କମିଶନ ଯାଏ ପ୍ରତିଫଳିତ । ଆମରି ଏଇଠି ଖାନ୍ନା କମିଶନ ରିପୋର୍ଟରେ ଲୋକଙ୍କର ଏଇ ଆଶା ଓ ନିରାଶା । କଣ ହୋଇଥାନ୍ତା—କ'ଣ ହୋଇଗଲା । ତିରିଶି ବର୍ଷର ସେ ଗୁଳାକୁ ବଦଳାଇବାକୁ ହେଲେ ଜନତା ଶାସନର ଯେଉଁ ଦୀକ୍ଷା ବା ତାଲିମ୍,ଯେଉଁ ଯୋଗ ଓ ଚେତନା ଲୋଡ଼ା···ତାହା କଣ ତାଙ୍କ କାହାଣୀ ଓ ଚଳଣୀରେ ଫୁଟିଛି । କାହାକୁ ଦେଖି ଶିଖିବେ ? ଏଠି ତ—"ଭୁତ ମୁଣ୍ଡର ମୁଁ ତ ମୁଣ୍ଡର ହେଁସ କାହାପାଇଁ ଧୋଇବା ।" ଗୁଳାଛି ।

ଯୋଗକୁ ସିନା କେନ୍ଦ୍ରରେ ମୋରାରଜୀ, ଚରଣ ସିଂ, ଜଗଜୀବନଙ୍କ ପ୍ରଶ୍ନ ସାଙ୍ଗକୁ ଯୁବ ତୁର୍କ ନେତା ଚନ୍ଦ୍ରଶେଖର ଓ ବଟୁଲୀ ଫର୍ନାଣ୍ଡିସ୍ ରହିସାଇଛନ୍ତି ବୋଲି ଶାସନର ଶଗଡ଼କୁ ପୁରୁଣା ଗୁଳାରୁ ନୂଆ ଗୁଳାରେ ଠେଲୁଛନ୍ତି । ଦେଖିବା ଲୋକେ କେନ୍ଦ୍ର ମନ୍ତ୍ର ନିର୍ଦ୍ଧାରଣର ସେ ଧର୍ମୀକୁ ଅନାଣ୍ଡିକୁ କ'ଣ ବୁଝୁଛନ୍ତି ! ଶେଷ ଦୁଇ ବର୍ଷରେ ଶ୍ରୀମତୀ ଗାନ୍ଧୀ ଯେଉଁ କୁହୁକ କଜଳ ପିନ୍ଧାଇଦେଇ ଆମ ଶିକ୍ଷିତ ସମାଜ ସୁନ୍ଦରଙ୍କୁ ମେଘରି ମେଣ୍ଢା କରି ଅଡ଼ାଇଲେ ? ନିଜ ବିବେକକୁ ପଚାରିଲେ ଏ ଲଜ୍ୟା ସାରା ସମାଜର ···ଗାନ୍ଧୀ ପରବର୍ତ୍ତୀ ଯୁଗର । ଏଥିରୁ କାଏ କେମିତି—କାହିଁକି ଅଟକ ବନ୍ଦୀ ହେଲି ବା କାଏ ଟେଲ୍ଲା ପୁଅ ହୋଇ କୋଡ଼ରେ ବସିଲେ ସେ ଅନ୍ଧଶ୍ରେଣୀ ବିଭାଗ ତ ସେଇ କେଇ ଜଣ ମୁଖିର ଚତୁରଙ୍କ ଭିତରେ ।

ଆଉ ଯେଉଁ ଅଗଣିତ ମୁକ ଜନତା ସବୁ ସହି ମୁହଁ ମାଡ଼ି ପଡ଼ିଲେ । ଏଇ ଶିକ୍ଷିତ ମଧ୍ୟବିତ୍ତଙ୍କ ଭିତରୁ ଯାହାଙ୍କର ଦାୟିତ୍ୱ ବୋଧ ସଙ୍ଗେ

ଅତ୍ୟାଚାରର ଆତଙ୍କ ହାଂସଗ ଟେମ୍ପରକୁ ଠେଲିଦେଲା ? କେବେ ମିନା କେଉଁ ପଦ୍ଧତିରେ **'ଚତୁର୍ବର୍ଣ୍ଣ'** ସୃଷ୍ଟି କରି ପୁରୁଷାନୁକ୍ରମିକ ସତ୍ତ୍ୱ ସାବ୍ୟସ୍ତ କରିଥିଲେ ? ଏବେ ତ ରାଜଧାନୀରେ ସେଇ ଜାତିଆଣ ଭେଦ ଉଚ୍ଛୁଳି ଉଠୁଛି । ମାଳମଣି ସେନାପତି ବା ପ୍ରାଣକୃଷ୍ଣ ପରିଜା ଜେଲ ଯାଇ ନଥିଲେ ବୋଲି କ'ଣ କମ୍ ଉପେକ୍ଷିତ ହୋଇଛନ୍ତି···ଅଥଚ ମୋରାରଜୀ ଜୟପ୍ରକାଶ ଜେଲ ନଯାଇ ଥିଲେ ସୁଦ୍ଧା ଆଜି ଏ ଅନୁଭବ ସିଦ୍ଧ ଆଦର୍ଶରେ ଏପରି ଦୀକ୍ଷିତ ହୋଇ ପାରିଥାନ୍ତେ ? ଆଖି ଆଗରେ ତ ମୁଛ ମୋଡ଼ି ସେନ୍ସନଆ ସ୍ୱାଧୀନତା ସଂଗ୍ରାମୀଙ୍କ ଠାରୁ ଅନେକ ବନ୍ଦୀ ହୋଇଥିବା କ୍ଷମତାଧରଙ୍କ ଯାଏଁ ସମାଜ ତଥା ଜନସାଧାରଣଙ୍କୁ ଯାହା ଦେଖାଇ ଶିଖାଉଛନ୍ତି !

ମୁଖ୍ୟମନ୍ତ୍ରୀ ବିରେନ୍ ମିତ୍ର ଆଜି ଜୀବିତ---ସେଇପରି ମୁଖ୍ୟମନ୍ତ୍ରୀ ସଦାଶିବ ତ୍ରିପାଠୀ ଓ ଉପ ମୁଖ୍ୟମନ୍ତ୍ରୀ ପବିତ୍ର ପ୍ରଧାନ । ଆଉ ସେହି ସବୁ ମନ୍ତ୍ରୀ କୋଠ ପାର୍ଟିରେ ଦେଶ ବିଦେଶ ବୁଲି ଆସିଲେ ।

ଗାନ୍ଧୀଙ୍କର ଗୋଟିଏ କଥା—ଆପଣେ ଆଚରି ପ୍ରଭୁ ଅପରେ ଶିଖାଏ···

ନିଜ ଆଚରଣକୁ ଦେଖ । ଆଉ ଏଇ ଦେଖାଇଦେବାରେ ସେଇ ଚକ୍ଷୁ, ଚଦକ—

"ରୂପ ଲାଗି ଆଖି ଝୁରେ
ଗୁଣେ ମନ ଭୋର···"



# ପରନିନ୍ଦା

ପରର କୁତ୍ସାରଟନା ଆମ ସମାଜ ସୁଜନଙ୍କର ଏକ ସ୍ୱାଦ୍ୟ ସାମଗ୍ରୀ । ଅନ୍ୟକୁ ଅପବାଦ ଦେଇ ଯେଉଁ ଆତ୍ମସନ୍ତୋଷ ତାହା ଖାଲି ଅକ୍ଷମର ଚିତ୍ତ ବିନୋଦନ ନୁହେଁ—ସ୍ୱକୃତ ପାପର ଏକ ଅମୋଘ ଆବରଣ ।

ସାରଳା ଦାସ ସିନା କେଉଁ ଦିନ କହିଥିଲେ—

"ଆପଣା ଦେହରେ ବାବୁ ଚଢ଼ୁଛି ଅଂଗାର
ପର ଚକ୍ଷୁ ବାନ୍ଧୁ ନାସା ଉଠନ୍ତି ହାତ ଦେଇ ।"

ତା ପର ତ ଗାନ କୃଷ୍ଣଙ୍କର—

"କରନ୍ତି ଅଗୋ ଅନେକ ସ୍ତୁପ
କେହି ନ ଜାଣନ୍ତି ଭିତର ପାପ ।"

ପ୍ରଶ୍ନଟା ଉଠୁଛି weekly 13-11-77 ସଂଖ୍ୟାରେ ସମ୍ପାଦକ ଖୁଷବନ୍ତ ସିଂଙ୍କ—ଶ୍ରୀମତୀ ଗାନ୍ଧୀଙ୍କ ପୁତ୍ର ତଥାଗତଙ୍କ ଭ୍ରାଂଶୀ ସମ୍ପର୍କରେ । ଖୁଷବନ୍ତ ସିଂଙ୍କ ସପେଇକୁ ସିଏ ଖଣ୍ଡି ସାକ୍ଷୀ ମାତାଲ ବୋଲି ଉଡ଼ାଇ ଦେଇଛନ୍ତି—ସେମାନେ ଏଡ଼ିକି ବୁଝିବା ଉଚିତ ଯେ ଶୁଣ୍ଡି ଦୋକାନକୁ ଜଣା କେବଳ ମହାତ୍ମା ଯିବେ ।

ସେଦିନ ପତ୍ରୀ ଲକ୍ଷ୍ମୀ ପାରେ ଡ଼କାଏତ୍ ଓ ହତ୍ୟାକାରୀଙ୍କ ବିରୁଦ୍ଧରେ ମକଦ୍ଦମା ଚଳାଇବାରୁ ଜଣ ଜଣ ଜଣା ଓକିଲଙ୍କୁ ପ୍ରାଣ ଦେବାକୁ ପଡ଼ିଛି । ଏଇଥିଲାଗି ଆମର ସେ ଢ଼ଗ ପଦକ—

"ଯାହା ନଦେଖିବ ଦୁଇ ନୟନେ
ପରତେ ନଯିବ ଗୁରୁ ବଚନେ ।"

ପୁଣି ଏଇ ଗୁରୁ ବଚନକୁ ସିଏ ଆଖି ବୁଜି ମୁଣ୍ଡିଆ ମାରନ୍ତି ତାଙ୍କର ତ—"ବିଶ୍ୱାସେ ମିଳଇ କୃଷ୍ଣ" ପୁଣି କନ୍‌ଫୁସିଅସ୍‌ଙ୍କ ଭାଷାରେ ଡକାଏତଙ୍କ

ଭାରତରେ ଯେଉଁ ପରସ୍ପର ବିଶ୍ୱାସ । ତା' କେମିତି ସିନା ସେ ବିଶ୍ୱାସକୁ ଲାଗି ପରକାଷ୍ଠା ସାକ୍ଷୀ ହୋଇଯାଉଛନ୍ତି ? କିନ୍ତୁ ସେଥିରେ ଆମମାନଙ୍କର ଜୀବନ ସେପରି କପଟ ହୋଇଯାଉଛି । ଆନନ୍ଦ ମାର୍ଗୀଙ୍କ ନଶ୍ୱରପନରୁ ମୃତ୍ୟୁବରଣ ଓ କର୍ମଯୋଗନର ଯେଉଁ ସିଲ୍ ସିଲର ପ୍ରମାଣ ?

ଏଥିପାଇଁ ଆଇନରେ ଅପରାଧ ପ୍ରମାଣ ନହେଲା ଯାଏଁ ଖାଲି ଅଭିଯୋଗରୁ ଜଣକୁ ଅପରାଧୀ ବୋଲି ଧରିନେବା ଆଉ ଚଳୁନି ।

ଶ୍ରୀମତୀ ଗାନ୍ଧୀଙ୍କ ଠାରୁ ଶ୍ରୀମତୀ ଶତପଥୀଙ୍କ ଯାଏ ଆଇନର ଏଇ ଧାରାର ବୃଦ୍ଧିରୁ ଏତେ ଅଭିଯୋଗ ସତ୍ତ୍ୱେ ବି କଂଗ୍ରେସ ଓ ଜନତା ଦଳର ଭୁଙ୍ଗା କାର୍ଯ୍ୟକାରୀ କମିଟି ସଦସ୍ୟ ପଦରୁ ବଞ୍ଚିତ ହୋଇ ନାହାନ୍ତି ।

ଆଜିକାଲି ସିନା କହୁଥାଇଛନ୍ତି ପର ନିନ୍ଦା ଶୁଣିବା ପାପ...ଏବେ ତ ପର ନିନ୍ଦା ହିଁ ହୋଇଛି ଜନମତ ସୃଷ୍ଟିକରଣର କୌଶଳ ।

ଗାନ୍ଧୀବାଦୀ ବୋଲି ଯିଏ ଆଜି ସମାଜ ସମ୍ମାନିତ ସେମାନେ ଅନ୍ତତଃ ୨୦ । ୮ । ୧୯୩୩ 'ହରିଜନବନ୍ଧୁ'ରେ ପ୍ରକାଶିତ ଗାନ୍ଧୀଜୀଙ୍କ ଦୁଇଟି ଧାଡ଼ିକୁ ଆଉ ଥରେ ଖୋଲା ଅନ୍ତରରେ ଦେଖନ୍ତୁ ।

—"ନିଜ ଦୋଷକୁ ପାହାଡ଼ ପ୍ରମାଣ କରିଦେଖ...ସେଇଟାକୁ ସଂଶୋଧନ କରିବାକୁ ସତତ ଉଦ୍ୟମ କର...ତେବେ ଦେଖିବ ଯେଉଁ ଅଧିକାର ଦାବୀ କରୁଛ ତାର ମୂଳ କାଠି ଏଇଟି ।"

କଦାପି ବିଶ୍ୱାସ କର ନାହିଁ ଯେ ଅନ୍ୟଙ୍କର ଯେଉଁ ଦୋଷ ଅଛି ବୋଲି ତୁମେ ତୁମ ନିଜ ଦୋଷକୁ ଘରବାହା କରିବ ନାହିଁ ।

ସରଳା ଦାସଙ୍କୁ ନ ମାନିଲେ ଗାନ୍ଧୀଙ୍କୁ ତ ଠିକ ହେବନି ।



"କାମନା କର ବାଂଛା କର ନାହିଁ
ତୋର ସଙ୍ଗେ ମନ ଦେଇଛି ଥୋଇ ।
ଦାସ ବନମାଳୀ ଉରେଇ ନାହିଁ ।"

## କ'ଣ ନୁହେଁ, କିଏ ?

୧୯୮୪ ମାର୍ଚ୍ଚ-ଏପ୍ରିଲ୍ ମାସରେ ହରିଆନାର ଭିବାନି ଜିଲ୍ଲାର ରେଘା ଠାରେ ୮୨ ବର୍ଷିୟା ବିଧବା ରାମ ଦୁବେଙ୍କ ପୁଲିସ୍ ଅଗୋଚରରେ ମୃତ୍ୟୁ ଘଟଣାରେ ତଦନ୍ତ ରିପୋର୍ଟ ଜଷ୍ଟିସ୍ କପୁର ଦେଇଛନ୍ତି ।

ଏ ଘଟଣାକୁ ପ୍ରଥମେ Stin ବୋଲି ଗୋଟିଏ ସ୍ଥାନୀୟ ପତ୍ରିକା ପ୍ରକାଶ କଲେ ।

ତାପରେ ଏଇ ଘଟଣା ପରିଣାମରେ ମନ୍ତ୍ରୀ ଚନ୍ଦ୍ରାବତୀଙ୍କୁ ମୁଖ୍ୟମନ୍ତ୍ରୀ ବଂଶୀଲାଲ୍ ତାଙ୍କ କ୍ୟାବିନେଟ୍ ରୁ ବାହାର କରିଦେଲେ ।

ସେତେବେଳେ ଏହି ପତ୍ରିକା ଉପରେ କୌଣସି ସେନ୍‌ସର କଟକଣା ନଥିଲା । ସ୍ଥାନୀୟ Stin ପତ୍ରିକାଟିକୁ ସବୁ ବଡ଼ ବଡ଼ ଜାତୀୟ ସମ୍ବାଦ ପତ୍ରକୁ ପଠାଯାଇଥିଲା । ତଥାପି ବଡ଼ ବଡ଼ ସମ୍ବାଦ ପତ୍ରରେ ଚନ୍ଦ୍ରାବତୀଙ୍କ ବରଖାସ୍ତ ସମ୍ବାଦ ବାହାରିଥିଲେ ବି ରାମଦୁବେ ଙ୍କ ମୃତ୍ୟୁ ଘଟଣାକୁ କେହି ଛୁଇଁଲେ ନାହିଁ ।

## କାହିଁକି ?

ଏକ୍ସପ୍ରେସ୍ ପତ୍ରିକାର ସମ୍ପାଦକ ରାଜେନ୍ଦ୍ର ପୁରୀ ୧୩ । ୧୧ । ୭୭ Weekly ପତ୍ରିକାରେ

ନିରଜ୍ ଉଦବନଙ୍କ ମାମଲା କଣ କୌଣସି ବଡ ବଡ଼ ସମ୍ବାଦ ପତ୍ରରେ ପ୍ରକାଶ ପାଇଥିଲା କି ? ଅଥଚ ଏକ୍ଷେତ୍ରରେ ମାଲବ୍ୟଙ୍କ ଠାରୁ ମହନ୍ତାଙ୍କ ଯାଏ କେନ୍ଦ୍ର କ୍ୟାବିନେଟ୍‌ର ବଡ ବଡ ମନ୍ତ୍ରୀମାନେ ଜଡିତ ଥିଲେ । ସେ ମାମଲା ଏଯାଏଁ ବି ସରିନାହିଁ । ସମ୍ପାଦକୀୟ ସ୍ୱେଚ୍ଛା ; ଆଜିକାଲିକାର ପୁଞ୍ଜିବାଦୀ ଚିଲ୍ଲା । କେବେ ସିନା ଥିଲା 'ମିସନ' ହୋଇ ? ଆଜିତ ବିଜ୍ଞାପନର

ଅର୍ଜନରୁ କମ୍ପାନୀର ମୁନାଫା । ଦେଶାତ୍ମବୋଧର ସେଇ ଉତ୍ସର୍ଗ ରହିବ କପରି ? ଯିଏ ଯେଉଁ ଡ଼ାଳରେ ବସେ ସିଏ ସେଇ ଡ଼ାଳ କାଟିବ କେଉଁ ବୁଦ୍ଧିରେ ?

ଧନ ଓ ବିଜ୍ଞାପନ ସାହାଯ୍ୟରେ ସମ୍ବାଦ ପତ୍ର ପାଠକ ପାଠିକାଙ୍କୁ ଶିଖାଇଦେଉଛନ୍ତି ‘**କିଏ କହିଲେ**’ ଏହାହିଁ ମୁଖ୍ୟ, “**କଣ କହିଲେ ?**” ସେ କଥାକୁ ପଚାରୁଛି କିଏ ।

ମୋ ପ୍ରଶ୍ନ ହେଲା ଯିଏ କହୁଛନ୍ତି "Person called" ସିଏ ? ରାଜନୀତିଠାରୁ ଧର୍ମନୀତି ଯାଏ ବ୍ୟକ୍ତିର ବିଜ୍ଞାପନ ବିନା...କୋଉଠିର ବା ଭଗତ ଜୁଟିବେ କପରି ? ତାପରେ କଳାକୁ ଧଳା କରି ଦେଖାଇବାରେ ତ କାରିଗରର ବାହାଦୁରୀ । ଏଇ କମ୍ୟୁନିକେସନ ମିଡ଼ିଆକୁ ଧରି ତ ଶ୍ରୀମତୀ ଗାନ୍ଧୀଙ୍କ ମୋହନମନ୍ତ୍ର ଓ ତାର କୁହୁକର କାରସାଦି । ସବୁଠି ଯେ ହେଲେ କେଉଁ ବଡ଼ ବଡ଼ିଆ ଥିଲେ ତାଙ୍କର ନାମ ଅଧ କଲମେ ହେଲେ ମୁଖ୍ୟବକ୍ତା କ'ଣ କହିଲେ ତାହା ଦୁଇଧାଡ଼ିରେ ସମାପ୍ତ । ଯେଉଁଠି ଉପର ଖୋଳର ଚାକଚକ୍ୟରେ ଉପାଦାନର ମର୍ଯ୍ୟାଦା ସେଠି ଭିତରେ ମାଲ କିଏ ଦେଖୁଛି । ଫଳରେ ଶବ୍ଦଠାରୁ ବିଜ୍ଞାପନରହିଁ ଏଯୁଗରେ ବଜାର କାଟୁଛି । ଚୁଷଟେ ଖୋଳିଦେଲେ ସବୁ ପାଣି ମିଳିଗଲା ତେବେ ଏଣି ସାତ ଗମ୍ଭୀରକୁ ଖୋଳିବ କିଏ ?

ଏ ଦିଗରେ ବାର୍ତ୍ତାମଣ୍ଡଳୀ ଆତ୍ମସମୀକ୍ଷାର କର୍ତ୍ତବ୍ୟ ।

ପୋଖରୀରେ ବାଳିଆ ବଢ଼ିଲେ କେଉଟଙ୍କ ପ୍ରାଣନାଶ ନିଶ୍ଚିତ । ଏମିତି ସମ୍ବାଦ ପତ୍ରମାନେ ସ୍ୱାର୍ଥପ୍ରେ ସମସ୍ୟାରେ ପକ୍ଷପାତ କରିଲେ ବେଳେ ଦେଶର ସତ୍ୟଘଟଣାକୁ ଯେଉଁ ସାହାସରେ ଛପାଇ ଦିଅନ୍ତି ବଡ଼ ବଡ଼ିଆ ଲୋକଙ୍କ ପକ୍ଷରେ ତାହା ସମ୍ଭବ ନୁହେଁ ।

ଏବେ କିନ୍ତୁ କେତେଟି କାଗଜର ଲୋକ ପାଠାଳେ ସତ୍ୟାସତ୍ୟ ପ୍ରଚାର କରିବାକୁ ସମ୍ଭବ ନଥାଏ । ବଡ଼କାଗଜଙ୍କ କାମ ହେଲା ଆଗେ ବଡ଼ ବଡ଼ିଆଙ୍କ ଫଟୋ ଛାପିଦେବା ।

ସାମ୍ବାଦିକ ରାଜେନ୍ଦ୍ର ପୁରୀ ବଡ଼ବଡ଼ିଆ ସମ୍ପାଦକଙ୍କୁ ଟେକ୍ ଟୋକ୍ ଚକ୍ରରଙ୍କୁ ଏଇ ବୁଦ୍ଧିଟିର ମୁଣ୍ଡୁ ସନ୍ଦେଶ ଛପା ନହେଲା କାହିଁକି ? ସେଠାକୁ

ସିନା ସ୍ୱରାଷ୍ଟ୍ର ମନ୍ତ୍ରୀ ଚରଣ ସିଂ ତଦନ୍ତ କମିଶନ ବସାଇଲେ ବୋଲି ତ ପୋଲିସ୍ ଅତ୍ୟାଚାରର କାହାଣୀ ପଦାକୁ ବାହାରିଲା ?

ସୌଭାଗ୍ୟର କଥା ଯେ ଶ୍ରୀଚରଣ ସିଂ ବଡ଼ ବଡ଼ ହାକିମଙ୍କୁ ଜେମାନ୍ତି କ୍ଷମତାଧରଙ୍କ ବେଆଇନ ଓ ଅନ୍ୟାୟ ହୁକୁମ୍‌କୁ ପ୍ରତିବାଦ କରିବାକୁ ବତାଇ ଦେଉଛନ୍ତି । ପୁଲିସ ଅଫିସରଙ୍କୁ ଶିଖାଇ ଦେଉଛନ୍ତି ଯେ ଉପରିସ୍ଥଙ୍କ ହୁକୁମ ଅନ୍ୟାୟ ହେଲେ ଲିଖିତ ଅର୍ଡ଼ର ମାଗିନିଅନ୍ତୁ । P.S.Cଙ୍କ ଉପରେ ରାଜ୍ୟଶାସନ କର୍ତ୍ତାଙ୍କ ହୁକୁମତି ନଚଳୁ । ଚରଣ ସିଂଙ୍କ ନିର୍ଦ୍ଦେଶନାମା କେତେଦୂର କାର୍ଯ୍ୟକାରୀ ହେବ ସେ କଥା ଅଲଗା ଅଲଗା କିନ୍ତୁ ନୋହିଲେ ବି ସ୍ୱରାଷ୍ଟ୍ର ମନ୍ତ୍ରଣାଳୟର ଏହିପରି ନିର୍ଦ୍ଦେଶନାମା ଯେ ଚରଣ ସିଂଙ୍କୁ ଅଭିନ୍ନ କରୁଛି— ଏଥିରେ ସନ୍ଦେହ ନାହିଁ । ଅନ୍ୟାୟ ବା ପକ୍ଷପାତ ନକଲେ ହୁକୁମତିର କି କରନ୍ତି ?"

ଝିଙ୍କୁରିଙ୍କ ପାରୁ ଅମଲତନ୍ତ୍ର ଯାଏଁ ବ୍ୟକ୍ତି ଭକ୍ତି ବିନା କି'ଣ ଉପରକୁ ଚଢ଼ିପାରିବେ ? ଖାଲି ନିଜ ସ୍ୱାର୍ଥରେ ନୁହେଁ ମୁଖ ପୋଷାକିଆମାନେ ଏଇ ବ୍ୟକ୍ତିଭକ୍ତିର ଫଳଶ୍ରୁତି ।

ସୁଜନପାଳନ···ହୋଇ ଆସିଛି ଆମ କ୍ଷମତାଧରଙ୍କ ଅଭ୍ୟସ୍ତ ଆଚରଣ । ଏବେ କିନ୍ତୁ ମନ୍ତ୍ରୀଙ୍କ ଉପରେ ଦୋଷ ପକାଅ ନାହିଁ ବୋଲି ସିଏ କହୁଛନ୍ତି ମନ୍ତ୍ରୀ କ୍ଷମତାର ଅପକର୍ମ କରଣ ହେଉଛିବୋଲି କହିବାକୁ ତାଙ୍କ ମୁହଁରେ ପିଠା ପଶିଛି ।

ମନ୍ତ୍ରୀ ଆଡ଼ଭାନୀଙ୍କ ଏକାନ୍ତ ଅନୁରୋଧ ସମ୍ବାଦପତ୍ର ମାନଙ୍କରେ ସତ୍ୟପ୍ରକାଶ ହେଉ···କି'ଣ କହିଲେ ଯେ କଥା ଲୋକେ ଜାଣିପାରିବେ କରନ୍ତୁ ···କିଏ କହିଲେ ତାଙ୍କ ନାମ ପ୍ରକାଶନ ତାଙ୍କ ଜାଣିରୁ ଲୋକେ ଜାଣନ୍ତୁ ।



"THE SEA SEEMS TIED TO THE DEEP
ABYSS, CRUCIFIED, LOOKING AT
THE HIGH HEAVEN, TO DISENGAGE ITSELF,
VIOLENT, ROARING, NAILED TO ITS BLACK BED."

—*Aleixandre, The Nobel-Laureate 1978.*



